# ନୂତନ ମାଟିର ସ୍ପର୍ଶ

## ଗଣେଶ୍ୱର ମିଶ୍ର

ପ୍ରକାଶକ:
ପବ୍ଲିଶିଂ ହାଉସ୍
ଏନ୍.-୬/୪୨୮, ଆଇ.ଆର୍.ସି.ଭିଲେଜ୍
ନୂଆପଲ୍ଲୀ, ଭୁବନେଶ୍ୱର-୧୫
ଫୋନ୍. ନଂ-୫୫୬୧୦୭

ମୁଦ୍ରଣ:
କ୍ରିଏଟିଭ୍ ଅଫ୍‌ସେଟ୍
ଭୁବନେଶ୍ୱର-୧୫

ପ୍ରଚ୍ଛଦ:
ଲେଖକଙ୍କ ଦ୍ୱାରା ଗୃହୀତ ଆଲୋକଚିତ୍ର

ପ୍ରକାଶନ ବର୍ଷ:
୨୦୦୨

ମୂଲ୍ୟ:
୭୫/-

ISBN 81 – 88371 – 03 – 3

**Nutana Matira Sparsha**

**Ganeswar Mishra**

**Publisher:**
Publishing House
N-6/428, IRC Village
Nayapalli, Bhubaneswar-15
Ph: 556107

**Printer:**
Creative Offset
Bhubaneswar-751015.

**Cover Design:**
Photograph by the Author

**Publishing Year:**
2002

**Price:**
75/-

ISBN 81 – 88371 – 03 – 3

# ସୂଚନା

ନିଜ ପରିଚିତ ଅଞ୍ଚଳ ବାହାରେ କୌଣସି ଏକ ନୂତନ ସ୍ଥାନରେ କିଛି ସମୟ ଅତିବାହିତ କରିବାର ଅନୁଭୂତି– ଏ ବହିର ବିଷୟବସ୍ତୁ । ସେଥିପାଇଁ ଏପରି ନାମକରଣ ।

ଅନ୍ୟ ଭାବରେ କହିଲେ, ଏ ବହିର ଲେଖାସବୁ ଭ୍ରମଣ ଆଧାରିତ । ଭ୍ରମଣର ଇଲାକା: ଭାରତ, ବିଶେଷତଃ ଓଡ଼ିଶା ତଥା ଓଡ଼ିଆଭାଷୀ ଅଞ୍ଚଳର କେତେକ ଗ୍ରାମ ଓ ସହର ।

ଗଣେଶ୍ୱର ମିଶ୍ର

# ସୂଚୀପତ୍ର

## ପ୍ରଥମ ଭାଗ


ଚାନ୍ଦବାଲିକୁ ନାଶକଲା ନୂଆ ରେଳ ହୋ ୯

ଚାଲନ୍ତୁ ସୁନାବେଡ଼ା ୧୨

ଯାତ୍ରା ଡାଏରୀ : ଆଠମଲ୍ଲିକ ୧୬

'ମେଟିସ୍ ନାଇନ' ୧୯

ଯାତ୍ରା ଡାଏରୀ : ଭୁବନେଶ୍ୱରରୁ ବଲାଙ୍ଗୀର ୨୧

ଯାତ୍ରା ଡାଏରୀ : କରଞ୍ଜିଆ ୨୫

ଲାଲୁବାବୁଙ୍କ କୋଠି ୨୯

ଭୂତମାନେ କଅଣ କରନ୍ତି ୩୫

କୋଣାର୍କରେ ନିଃସଙ୍ଗ ପରିବ୍ରାଜକ ୪୧

କେଉଁ ଭାଷାରେ କଥା କହେ ରାଉରକେଲା ୪୩

ଲେଡ଼ି ଠମ୍ସନ୍‌ଙ୍କ କଇଁଫୁଲ ୪୬

ହାସିମ୍ ମଞ୍ଜିଲ୍: ଏକ ସ୍ମରଣୀୟ ସନ୍ଧ୍ୟା ୫୦

ଶିକ୍ଷୀମାନଙ୍କ ଗାଁ ୫୩

କଳାହାଣ୍ଡି-ଦର୍ଶନ ୫୮

କେନ୍ଦୁବିଲ୍ୱ ୬୩

ଅଇଲା ବରଷା ବଢ଼ି ୬୬

ବନ୍ୟା, ନୁହାଡ଼ି ଓ ଶୁକଦେବ ନାୟକ ୬୯

ବଢ଼ିପାଣିର ଧର୍ମ ୭୩

ଇଣ୍ଟରନେଟ୍ ନା ପାନୀୟଜଳ ୭୬

ଭାସ୍କର ମିଶ୍ରର କାହାଣୀ ୭୯
ସନ୍ ହୋଟେଲ୍ ଅଙ୍କୁର ସଂସାର ୮୧
ବର୍ଷା ତୋଫାନରେ ଜଗନ୍ନାଥଙ୍କ ରଥ ୮୪
ସେ ଦିନେ ମନ୍ତ୍ରୀ ଥିଲେ ୮୬
ପତ୍ରପୁର ଘାଟ ଓ ବ୍ରାହ୍ମଣୀ ସେତୁ ୮୮
ରୁଷି ପାହାଡ଼ରେ ବାଘ ୯୦
ଧଳଭୂମିଗଡ଼ ୯୩

## ଦ୍ୱିତୀୟ ଭାଗ

ଉତ୍ତର ଭାରତ ଏକ ସଂକ୍ଷିପ୍ତ ଅନୁଭୂତି ୯୭
ଅରୋଭିଲ : ଉଷାର ସହର ୧୦୪
ହୋଟେଲ ଅନ୍ନପୂର୍ଣ୍ଣା ଓ ଲା ରାମିନା ୧୦୭
ଯାତ୍ରା ଡାଏରୀ : ଦିଲ୍ଲୀ ୧୧୬
ଅଦୃଶ୍ୟ ମଣିଷ ୧୨୧
ତିନୋଟି ଗପ ୧୨୪
ରାଜପଥ ଜନପଥ ୧୨୮
ନିମନ୍ତ୍ରଣ ପାଇଁ ଅପେକ୍ଷା ୧୩୩
ମୋ ନାଁଆ ମଦନଲାଲ ଶର୍ମା, ବାବୁଜୀ ୧୩୬
ଦୁଇଟି ରେଳଗପ ୧୩୮
ଆସାମର କୁଲି ଓ ମେଘାଳୟର ପ୍ରଫେସର ୧୪୦
ଓଡ଼ିଶା ଓ କଳାପାଣି ୧୪୨

# ପ୍ରଥମ ଭାଗ

ଜନନୀର ଦେଖା କରିବାର ଇଚ୍ଛା
ଯଦି ହୋଇଥାଏ ମନେ,
ଉତ୍କଳର ମାଟି ଆଲିଙ୍ଗନ କରି
ତା' ଧୂଳି ଲେପ ବଦନେ ।

—ମଧୁସୂଦନ ଦାସ

# ଚାନ୍ଦବାଲିକୁ ନାଶକଲା ନୂଆ ରେଳ ହୋ

ଷାଠିଏ ସତୁରି ବର୍ଷ ତଳେ ଚାନ୍ଦବାଲି ସହରରେ ଗୀତଟିଏ ବୋଲା ହେଉଥିଲା:

ଚାନ୍ଦବାଲିକୁ ନାଶକଲା ନୂଆ ରେଳ ହୋ

ଧନ୍ୟ ସେ ଗଭର୍ଣମେଣ୍ଟ
ବୁଦ୍ଧି ତାହାର ଆଣ୍ଟ
ବାନ୍ଧି ରଖିଛି ଖଣ୍ଡେ ଧୂଆଁ କଳ ହୋ ।

ବ୍ରିଟିଶ୍ ଅମଳରେ ଓଡ଼ିଶାକୁ ରେଳଗାଡ଼ି ଆସିଲା ପରେ ଲୋକଙ୍କ ଯାତାୟାତ ସୁବିଧା ହେଲା, ମାଲ ପରିବହନ ସହଜହେଲା । ଉପକୂଳ ଜିଲ୍ଲାମାନଙ୍କର ଉନ୍ନତି ଓ ବିକାଶର ଦ୍ୱାର ଖୋଲିଗଲା, କିନ୍ତୁ କ୍ଷତି ହେଲା ଚାନ୍ଦବାଲି ସହରର ।

ଅବିଭକ୍ତ ବାଲେଶ୍ୱର ଓ ବର୍ତ୍ତମାନ ଭଦ୍ରକ ଜିଲ୍ଲାର ଚାନ୍ଦବାଲି ଗୋଟିଏ ବନ୍ଦର ସହର । ଚାନ୍ଦବାଲି ବୈତରଣୀ କୂଳରେ । ମାତ୍ର ଅଳ୍ପ କେତେ ମାଇଲ ଦୂରରେ ଧାମରା । ବୈତରଣୀ, ବ୍ରାହ୍ମଣୀ ଓ କେନ୍ଦ୍ରାପଡ଼ା କେନାଲ ସହିତ ସମ୍ପୃକ୍ତ । ତେଣୁ ଜଳପଥରେ ଚାନ୍ଦବାଲିରୁ କଟକ ଓ ଅନ୍ୟାନ୍ୟ ଅଞ୍ଚଳମାନଙ୍କୁ ଯାତାୟାତ ଓ ମାଲ ପରିବହନ କରାଯାଇପାରେ । ଚାନ୍ଦବାଲିରୁ ନଦୀ ପଥରେ ଧାମରା ଯାଇ ସେଠାରୁ ବଙ୍ଗୋପସାଗରରେ କଲିକତା ଯିବା ସହଜ । ଚାନ୍ଦବାଲି–ଧାମରା ବନ୍ଦର ମଧ୍ୟ ଦେଇ ଓଡ଼ିଶା ଭିତରେ ଓ ଓଡ଼ିଶା ବାହାରେ ଯାତାୟାତ ଓ ମାଲ ପରିବହନର ଯେପରି ସୁବିଧା ଅଛି, ଓଡ଼ିଶାର ଅନ୍ୟ କୌଣସି ବନ୍ଦରରେ ସେପରି ସୁବିଧା ନାହିଁ । ବହୁବର୍ଷ ଧରି ଧାମରା ଚାନ୍ଦବାଲି ହିଁ ଥିଲା ଓଡ଼ିଶାର ଏକମାତ୍ର ବନ୍ଦର । ୧୮୫୮ରେ ଧାମରାକୁ ଓ ୧୮୮୧ରେ ଚାନ୍ଦବାଲିକୁ ବନ୍ଦର ରୂପେ ଘୋଷଣା କରାଯାଇଥିଲା ।

ଓଡ଼ିଶାକୁ ରେଳଗାଡ଼ି ଆସିଲା ଯାଏଁ ଚାନ୍ଦବାଲି ହିଁ ଥିଲା ଓଡ଼ିଶାର ମୁହଁ । ଚାନ୍ଦବାଲି ବନ୍ଦର ଦେଇ ମଧୁସୂଦନ ଦାସ ଷ୍ଟିମରରେ କଲିକତା ଯାଇଥିଲେ ଶିକ୍ଷାଲାଭ କରିବା ପାଇଁ । ନଅଙ୍କ ଦୁର୍ଭିକ୍ଷ ସମୟରେ ଚାନ୍ଦବାଲି ଦେଇ କଲିକତାରୁ ଚାଉଳ ଓ ଅନ୍ୟାନ୍ୟ ଖାଦ୍ୟଶସ୍ୟ ଓଡ଼ିଶାକୁ ଅଣାଯାଇଥିଲା । ବନ୍ଦର ହୋଇଥିବାରୁ ଚାନ୍ଦବାଲି ହିଁ ଥିଲା ସେ ସମୟରେ ବ୍ୟବସାୟ ବାଣିଜ୍ୟର କେନ୍ଦ୍ର ଏକ ସମୃଦ୍ଧ ସହର ।

୧୮୯୫-୯୬ରେ ବେଙ୍ଗଲ - ନାଗପୁର ରେଳବାଇ କମ୍ପାନୀ ଓଡ଼ିଶାରେ ରେଳପଥ ନିର୍ମାଣ କାର୍ଯ୍ୟ ଆରମ୍ଭ କଲେ । ୮୮ ମାଇଲ ରେଳପଥ ନିର୍ମାଣ କରିବାକୁ କମ୍ପାନୀକୁ ଚାରିବର୍ଷ ସମୟଲାଗିଲା । ୧୮୯୯ରେ ଭଦ୍ରକ ରେଳପଥରେ ସଂଯୁକ୍ତ ହେଲା । ସେ ସମୟର ଚାନ୍ଦବାଲି ସମ୍ପର୍କରେ ଉତ୍କଳ ଦୀପିକା ଲେଖିଥିଲେ - 'ଚାନ୍ଦବାଲି ବାଟେ ଜାହାଜରେ ବହୁତ ଲୋକ ଯାତାୟାତ କରୁଛନ୍ତି ଓ ଯେବେ ସେଠାରେ ଦ୍ରବ୍ୟ ଓହ୍ଲାଇ କଟକକୁ ଆଣିବା ଓ କଟକରୁ ଦ୍ରବ୍ୟ ନେଇ ସେଠାରେ ନଦିବାର ସୁଯୋଗ ହୁଅଇ, ତେବେ ସେହିବାଟେ କଟକ ଜିଲ୍ଲାର ସବୁ ବାଣିଜ୍ୟ ଚାଲିବ । ଚାନ୍ଦବାଲିର ସୁବିଧା ଏହି ଯେ ଜାହାଜରେ ଭଡ଼ା ଊଣା ଓ ସ୍ଥଳପଥରେ ଜାହାଜ ନିକଟକୁ ଯିବାର ସୁଯୋଗ ଅଛି ।' (୧୮୭୨ ମାର୍ଚ୍ଚ ୨୩)

ନିକଟ ଅତୀତରେ ପ୍ରଥମଥର ପାଇଁ ଚାନ୍ଦବାଲି ସହର ପ୍ରତ୍ୟକ୍ଷ କରିବାର ସୁଯୋଗ ମିଳିଲା । ଦାଖା ହାଇସ୍କୁଲର ସୁବର୍ଣ୍ଣ ଜୟନ୍ତୀ ଉତ୍ସବରେ ଯୋଗଦେବା ପାଇଁ ମୋତେ ନିମନ୍ତ୍ରଣ କରିଥିଲେ ମୋର ଜଣେ ସାହିତ୍ୟିକ ବନ୍ଧୁ । ଭଦ୍ରକର ପୂର୍ବ ଦିଗରେ ପ୍ରାୟ ପଚାଶ କିଲୋମିଟର ରାସ୍ତା ଚାନ୍ଦବାଲି । ବାଟରେ ଗାଉଁଲି ସହରସବୁ - ତିହିଡ଼ି, ଗଦି, ମତୋ, ଧୁଷୁରି, ଦିଗିଛିଆ । ସହରଟି ମୋଟାମୋଟି ପରିଷ୍କାର ଓ ଶାନ୍ତ ।

ବନ୍ଦରର ଗୁରୁତ୍ୱ ହ୍ରାସ ପାଇବା ପରେ ଚାନ୍ଦବାଲି ସହରଟି ଶ୍ରୀହୀନ ହୋଇ ପଡ଼ିଛି – ଅଳ୍ପସମୟର କଥାବାର୍ତ୍ତାରେ ଏକାଧିକ ବନ୍ଧୁ ଅଭିଯୋଗ କଲେ । ଚାନ୍ଦବାଲି ବନ୍ଦରର ପୁନରୁତ୍ଥାନ ପାଇଁ ଉଦ୍ୟମ ମଧ୍ୟ ଜାରି ରହିଛି । ୧୯୯୨ରେ ପ୍ରକାଶିତ ଶାନ୍ତନୁ କୁମାର ମହାନ୍ତିଙ୍କ ସମ୍ପାଦିତ 'ବହିତ୍ର' ଗ୍ରନ୍ଥରେ ଚାନ୍ଦବାଲି ବନ୍ଦରର ଅତୀତ ଓ ବର୍ତ୍ତମାନ ସମ୍ପର୍କରେ ବହୁ ତଥ୍ୟ ପ୍ରଦତ୍ତ ହୋଇଛି । ଏକ ସମୟରେ ଚାନ୍ଦବାଲିରେ ଦଶଟା ଚାଉଳ କଳ ଥିଲା । ବର୍ତ୍ତମାନ ଅଛି ମାତ୍ର ଗୋଟିଏ । ଚାନ୍ଦବାଲିର ସତେଇଶିଟି ଗ୍ରାମପଞ୍ଚାୟତ ତିନୋଟି ନିର୍ବାଚନ ମଣ୍ଡଳୀରେ ଅନ୍ତର୍ଭୁକ୍ତ ହୋଇଛି । ଫଳରେ ଚାନ୍ଦବାଲିର ସାମଗ୍ରିକ ଉନ୍ନତି ସମ୍ଭବ ହେଉନାହିଁ । ଏକ ସମୟରେ ଚାନ୍ଦବାଲିରେ ତାଟେରା ଚିଙ୍ଗୁଡ଼ି ମିଳୁଥିଲେ ପ୍ରଚୁର । ବର୍ତ୍ତମାନ ତାହା ଚାଲିଯାଉଛି କଲିକତା । କିଲୋ ପାଞ୍ଚଶହ ଟଙ୍କା ।

ଚାନ୍ଦବାଲିର ବିପର୍ଯ୍ୟୟରେ ଆଶ୍ଚର୍ଯ୍ୟ ହେବାର କାରଣ ନାହିଁ । ରେଳ ଓ ବ୍ୟୋମଯାନ ପ୍ରବର୍ତ୍ତନ ପୂର୍ବରୁ ନଦୀ ଓ ସମୁଦ୍ରପଥରେ ବ୍ୟବସାୟ ବାଣିଜ୍ୟ ଓ

ଯାତାୟତ ଚାଲିଥିଲା । ସେଥିପାଇଁ ନଦୀ ଓ ସମୁଦ୍ର କୂଳରେ ହିଁ ଗଢ଼ିଉଠିଥିଲା ବଡ଼ ବଡ଼ ନଗର ଓ ସହରସବୁ । ଯେପରି କୋଲକାତା, ମୁମ୍ବାଇ ଓ ଚେନ୍ନାଇ । ଆଜି ମଧ୍ୟ ବନ୍ଦରଗୁଡ଼ିକର ଆବଶ୍ୟକତା ଅଛି ନିଶ୍ଚୟ । କିନ୍ତୁ ବନ୍ଦରଗୁଡ଼ିକର ପୂର୍ବ ଗୁରୁତ୍ୱ ଅନେକ ପରିମାଣରେ ହ୍ରାସପାଇଛି । ଚାନ୍ଦବାଲି ବନ୍ଦରର ପୁନରୁତ୍‌ଥାନ ହେଉ । କିନ୍ତୁ ଏହାପୁଣି ଥରେ ଓଡ଼ିଶାର ମୁହଁ ହୋଇପାରିବା ସହଜ ନୁହେଁ । ତେଣୁ ବନ୍ଦର ବ୍ୟତୀତ ଚାନ୍ଦବାଲିର ବିକାଶ ପାଇଁ ଅନ୍ୟାନ୍ୟ କାର୍ଯ୍ୟକ୍ରମ ହାତକୁ ନେବା ଜରୁରୀ । ସେ ସମ୍ପର୍କରେ ସ୍ଥାନୀୟ ଜନସାଧାରଣ କ'ଣ ଯୋଜନା କରୁଛନ୍ତି, ତା'ହା ବୋଧହୁଏ ସ୍ପଷ୍ଟ ନୁହେଁ । ❒

(୧୯୯୮)

# ଚାଲନ୍ତୁ ସୁନାବେଡ଼ା

ଦକ୍ଷିଣ ସୀମାନ୍ତରେ ଓଡ଼ିଶାର ଶେଷ ସହର ସୁନାବେଡ଼ା । ତାହାହିଁ ଓଡ଼ିଶାର ସୁନ୍ଦରତମ ସହର । ଆଜି ସେହି ସୁନାବେଡ଼ା ଓ ତା'ର ପାଶ୍ୱବର୍ତ୍ତୀ ଅଞ୍ଚଳରେ ବିରାଟ ଶିଳ୍ପ ବିପ୍ଳବ ସଙ୍ଘଠିତ ହେବାକୁ ଯାଉଛି । ମିଗ୍ କାରଖାନା ସ୍ଥାପିତ ହୋଇଛି, ଗଢ଼ିଉଠିଛି ଏକ ସର୍ବଭାରତୀୟ ସହର, ପୁଣି ସ୍ଥାପିତ ହେବାକୁ ଯାଉଛି ପୃଥିବୀର ସର୍ବବୃହତ ଆଲୁମିନିୟମ କାରଖାନା - ସୁନାବେଡ଼ାର ଖୁବ୍ ନିକଟରେ । କେଉଁ ଆଦିମ ଯୁଗରୁ ଅରଣ୍ୟ ଓ ଅନ୍ଧାର ଢାଙ୍କି ରଖିଥିଲା ଯେଉଁ ବିରାଟ ଭୂଖଣ୍ଡକୁ, ଶତାବ୍ଦୀ ଶତାବ୍ଦୀ ବ୍ୟାପୀ ଯେଉଁଠି ମଣିଷ ହାତରେ ଏକମାତ୍ର ଅସ୍ତ୍ରଥିଲା ଧନୁଶର, ସାହିତ୍ୟ ଥିଲା ଜହ୍ନରାତିର ଆକାଶ, ଜଙ୍ଗଲ କମ୍ପାଇଦେଉଥିବା ଚାଙ୍ଗୁବାଜା, ବଇଁଶୀ ଓ ପଦପଦିକିଆ ଗୀତ, ସେଇଠି ଆଜି ମୁଣ୍ଡଟେକିବାକୁ ଯାଉଛି ବିରାଟ ଟେକ୍ନୋଲୋଜିର ସଭ୍ୟତା । ଠିକ୍ ଏହିପରି ପରିବର୍ତ୍ତନ ଘଟିଥିଲା ଓଡ଼ିଶାର ଉତ୍ତର ସୀମାନ୍ତର ରାଉରକେଲାରେ । ଦକ୍ଷିଣ ସୀମାନ୍ତରେ ତାହାର ପୁନରାବୃତ୍ତି ।

ଏହି ପରିବର୍ତ୍ତନର ପ୍ରଭାତରେ ଆଜି ଭୁବନେଶ୍ୱରର କେତେଜଣ ଲେଖକବନ୍ଧୁ ସ୍ଲୋଗାନ୍ ଉଠାଉଛନ୍ତି - ଚାଲନ୍ତୁ ସୁନାବେଡ଼ା । ଏ ସ୍ଲୋଗାନ୍ ଯଥାର୍ଥ । କେବଳ ଓଡ଼ିଶାର ଅର୍ଥନୀତି ପାଇଁ ନୁହେଁ, ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ସଂରକ୍ଷଣ ଓ ବିକାଶ ପାଇଁ ଏ ସ୍ଲୋଗାନ୍ । ଆସନ୍ତାକାଲିର ସହର, ଆସନ୍ତାକାଲିର ସମୃଦ୍ଧିର ଉତ୍ସ ସୁନାବେଡ଼ା । ସେଇଠାକୁ ସ୍ରୋତଭଳି ମାଡ଼ିଚାଲନ୍ତୁ ଓଡ଼ିଶାର ତରୁଣକୁଳ । ବିଳମ୍ବକଲେ ପଡ଼ୋଶୀ ପ୍ରଦେଶର ସାହସୀ କର୍ମଠ ଯୁବକମାନେ ଅଧିକାର କରିନେବେ ଏଇ ଶିଳ୍ପବିପ୍ଳବର ସୁଫଳକୁ । ଓଡ଼ିଆ ଯୁବକମାନେ ପଛେଇଯିବେ ଆଉ ଗୋଟିଏ ଶତାବ୍ଦୀ । ସୁନାବେଡ଼ାକୁ ସ୍ରୋତଭଳି ମାଡ଼ିଚାଲନ୍ତୁ ଓଡ଼ିଶାର ତରୁଣକୁଳ । ତା'ନ ହେଲେ ଆଦିବାସୀ ଅଧ୍ୟୁଷିତ ଏହି ଆଦିମ ଭୂଖଣ୍ଡରେ ନୂତନ ସଭ୍ୟତାର ଜନ୍ମ କାଳରେ ହିଁ ମୃତ୍ୟୁ ଘଟିବ ଓଡ଼ିଆ ସଂସ୍କୃତିର । ମନେରଖନ୍ତୁ, ଓଡ଼ିଶାର ପଡ଼ୋଶୀ ପ୍ରଦେଶମାନେ ପ୍ରଚଣ୍ଡ ଶକ୍ତିଶାଳୀ, ନିଜ ଭାଷା ଓ ସଂସ୍କୃତିର ପ୍ରତିଷ୍ଠା ପାଇଁ ସେମାନଙ୍କ ଉତ୍ସାହ ଅଦମ୍ୟ । ସେମାନଙ୍କସହ ପ୍ରତିଯୋଗିତା ପାଇଁ ଆଗେଇଆସନ୍ତୁ ଓଡ଼ିଶାର ତରୁଣକୁଳ । ପ୍ରତିଯୋଗିତା ହିଁ ଅଗ୍ରସରତାର ଅନ୍ୟନାମ ।

ମନେରଖନ୍ତୁ, ଆସନ୍ତା କାଲିର ଅର୍ଥନୀତି ଶିଳ୍ପକେନ୍ଦ୍ରିକ ହେବାକୁ ବାଧ୍ୟ । ଏହି ଅର୍ଥନୀତି ପାରମ୍ପରିକ ଗ୍ରାମ୍ୟ ଜୀବନ, ଶାନ୍ତଜୀବନଧାରାକୁ ବିପର୍ଯ୍ୟସ୍ତ

କରିଦେବ,ଏହା ଦୃଢ ନିଶ୍ଚିତ । କିନ୍ତୁ ଏହି ଅର୍ଥନୀତି ହିଁ ନିୟନ୍ତ୍ରଣ କରିବାକୁ ଯାଉଛି ମଣିଷର ଭବିଷ୍ୟତ । ମାଟିର ମଣିଷ ଯନ୍ତ୍ରମଣିଷ ହେବାକୁ ଯାଉଛି, ଆମେ ଚାହୁଁ ବା ନ ଚାହୁଁ । ଏହି ପରିପ୍ରେକ୍ଷୀରେ ଯନ୍ତ୍ରସଭ୍ୟତାରେ ସାମିଲ ନ ହେବାକୁ କବିର ଆହ୍ୱାନ – 'ପତଙ୍ଗ ପରି ଝାସ ଦେ ନାହିଁ, ଦେ ନାହିଁ ତା'ର ମୂଳ୍ହେ' ଏକ ଭ୍ରାନ୍ତ ସ୍ଲୋଗାନ । ଓଡ଼ିଶାର ତରୁଣକୁଳ ପତଙ୍ଗପରି ଏଇ ଯନ୍ତ୍ରସଭ୍ୟତାରେ ଝାସଦିଅନ୍ତୁ, ଏହା ହିଁ ଆଜି ଆଗାମୀ ଯୁଗର ଦ୍ରଷ୍ଟାର ଦୃଢ଼ ଆହ୍ୱାନ । X X X

୧୯୮୦ ଏପ୍ରିଲ ମାସରେ ବିଜୟନଗର ଷ୍ଟେସନରେ ଓହ୍ଲାଇ କାର୍ ଯୋଗେ ସୁନାବେଡ଼ା ଯିବା ବାଟରେ ଲକ୍ଷ୍ୟ କରିଥିଲି – ଶିଳ୍ପ ବିପ୍ଲବର ଦ୍ୱାରଦେଶରେ ଉପନୀତ ହୋଇମଧ୍ୟ ଏକ ବିରାଟ ଭୂଖଣ୍ଡ ତଥାପି ରହିଛି ଆଦିମ ଓ ଗ୍ରାମ୍ୟ । ସକାଳର ମ୍ଳାନ ଆଲୋକରେ ରାସ୍ତା ଦୁଇକଡ଼ରେ ଅସଂଖ୍ୟ ତାଳ ଓ ଆମ୍ବଗଛ, କ୍ଷୁଦ୍ର କ୍ଷୁଦ୍ର ପଲ୍ଲୀ ଓ ନୁଆଁଣିଆ ଚାଳଘର, ଧାଡ଼ି ଧାଡ଼ି ଶ୍ରମିକ । ମଝିରେ ମଝିରେ ଗାଉଁଲି ହାଟ, ଝୁଡ଼ି ଝୁଡ଼ି ଟମାଟୋ, ବାଇଗଣ, କୁନ୍ଦୁରି । ତା'ସାଙ୍ଗକୁ ମଲ୍ଲୀଫୁଲ, ଅଇଁଳା ଫୁଲ । ଡ୍ରାଇଭର ବାରିକବାବୁ ବାଟରୁ ପରିବା କିଣିବା ଅବସରରେ ମନ୍ତବ୍ୟ ଦେଲେ 'ଏଠି ଯାହା ଆଠଅଣା, ସୁନାବେଡ଼ାରେ ଦି' ଟଙ୍କା ।' ବାରିକବାବୁଙ୍କ ମନ୍ତବ୍ୟ କେବଳ ସୁନାବେଡ଼ା ନୁହେଁ, ସମଗ୍ର କୋରାପୁଟ ଜିଲ୍ଲାର ଅର୍ଥନୀତିକ ଭବିଷ୍ୟତ ସୂଚାଉଥିଲା ମାତ୍ର ।

ବିଜୟନଗରମରୁ ସୁନାବେଡ଼ା ଯିବା ରାସ୍ତାରେ କେଜାଣି କାହିଁକି କାରର ସମସ୍ତେ ହଠାତ ଓଡ଼ିଆ ଜାତୀୟତା ସମ୍ପର୍କରେ ଆଲୋଚନା ଆରମ୍ଭ କରିଦେଲେ । ପଣ୍ଡାବାବୁ କହିଲେ, 'ବିଜୟନଗରମ ତ ଏକ ସମୟରେ ଓଡ଼ିଶାରେ ଥିଲା ।' ଥିଲା ହୁଏତ । କିନ୍ତୁ ବିଜୟନଗରମରେ ଅପାତତଃ ଓଡ଼ିଆ ସଂସ୍କୃତିର ଗନ୍ଧ ପାଇବା କଠିନ ।

ସାଲୁର ଘାଟି ଦେଇ ଆମେ ଓଡ଼ିଶାରେ ପ୍ରବେଶ କଲୁ । ସାଲୁରର ଅଧେ ଓଡ଼ିଶାରେ, ଅଧେ ଆନ୍ଧ୍ରରେ । ଓଡ଼ିଶାରେ ସେଇ ଅଧକର ନାଁ ସୁଙ୍କୀ । ଦୁଇକଡ଼େ ତରଙ୍ଗାୟିତ ପାହାଡ଼; ରୁକ୍ଷ ଓ ବୃକ୍ଷହୀନ । ଆଦିବାସୀ ଅର୍ଥନୀତି ବୃକ୍ଷସବୁକୁ ପରିଣତ କରିଛି କୋଇଲାରେ । ପକ୍ଷୀଟିଏ ବି ଦୃଷ୍ଟିରେ ପଡ଼େ ନାହିଁ ।

ଓଡ଼ିଶାର ସୀମା ଆରମ୍ଭ । ଓଡ଼ିଶା ସୀମାରେ ମୁମୂର୍ଷୁ ସାଇନ୍‌ବୋର୍ଡ଼ଟିଏ ତଳେ ପଡ଼ିଛି । ସେଇଥିରେ ଲେଖାହୋଇଛି, 'ଓଡ଼ିଶାର ସୀମା ଆରମ୍ଭ ।' (କୋରାପୁଟର ତତ୍କାଳୀନ କଲେକ୍‌ଟରଙ୍କୁ ଏହି ସାଇନ୍‌ବୋର୍ଡ଼ର ଅବସ୍ଥା ଜଣାଇଥିଲି । ପ୍ରତିକାର ହେଲା କି ?)

ଚିନିଦିନର ରହଣି ଭିତରେ ତିନୋଟି ବିଷୟରେ ଆକୃଷ୍ଟ ହୋଇଥିଲି ମୁଁ – କୋରାପୁଟର ଲ୍ୟାଣ୍ଡସ୍କେପ୍ ଓ ପ୍ରାକୃତିକ ପରିବେଶ, ବିଚିତ୍ର ଆଦିବାସୀ ଜୀବନ, ସର୍ବୋପରି ଓଡ଼ିଆ ସଂସ୍କୃତିର ସୁରକ୍ଷା । ହୁଏତ ଅଳ୍ପ କେତେଦିନ ଭିତରେ ଶିଳ୍ପ ବିପ୍ଳବ ଫଳରେ କୋରାପୁଟର ପ୍ରାକୃତିକ ଭୂଗୋଳ ଭୟଙ୍କର ପରିବର୍ତ୍ତିତ ହେବାକୁ ଯାଉଛି । ଶିଳ୍ପ ବିପ୍ଳବ ସାଙ୍ଗକୁ କୋରାପୁଟର ମୂଳ ପ୍ରାକୃତିକ ସୌନ୍ଦର୍ଯ୍ୟ କେତେଦୂର ସୁରକ୍ଷିତ ରହିପାରିବ, ତାହା ଏକ ବିରାଟ ସମସ୍ୟା । ହୁଏତ ଆଦିବାସୀ ଜୀବନର ଯେଉଁ କ୍ଷୁଦ୍ର ଭଗ୍ନାଂଶ ମୋ ଆଖିରେ ପଡ଼ିଲା, 'ପରଜା' 'ଅମୃତର ସନ୍ତାନ'ର ଆଦିବାସୀ ଚିତ୍ରଠାରୁ ତା'ହା ଅନେକାଂଶରେ ଭିନ୍ନ । ପାହାଡ଼ ସନ୍ଧିର ଆଦିବାସୀ ଗାଁ ଭିତରକୁ ସହର ଧସେଇହୋଇ ପଶିସାରିଲାଣି । ନନ୍ଦପୁର ଯିବା ବାଟରେ ଗୋଟିଏ ହାଟରେ ଜଣେ ଆଦିବାସୀ ମା' ତା' ପୁଅକୁ ଶସ୍ତା ବିସ୍କୁଟ ଖାଇବାକୁ ଦେବା ଦେଖିଲି । ହାଟରେ ବିକ୍ରୀ ଚାଲିଛି ବାଇଗଣ, ଟମାଟୋ, ବନ୍ଧାକୋବି, କୁକୁଡ଼ା, ମାଣ୍ଡିଆ, ଅଳସୀ, ଯଅ । ତା' ସାଙ୍ଗକୁ ଚା' ଓ ବିସ୍କୁଟ । ଦଳ ଦଳ ଆଦିବାସୀ ଯୁବତୀ –ତେଲ ଜୁଡୁବୁଡୁ ବାଙ୍କ ଖୋସା, ଆଣ୍ଠୁଯାଏଁ ଶାଢ଼ୀ, ଡାହାଣ କାନ୍ଧ ଉପରେ ଲୁଗାର ଗଣ୍ଠି, ଫୋଡ଼ା ନାକ । ମୁଣ୍ଡରେ ଆଲୁମିନିୟମର ଅଳଙ୍କାର । ପାହାଡ଼ ସନ୍ଧିର ଆଦିବାସୀ ଗାଁ ଭିତରକୁ ସହର ଧସେଇ ହୋଇ ପଶିସାରିଲାଣି ।

ସେତେବେଳେ ଚୈତ୍ରପର୍ବ । ବିସ୍ତୀର୍ଣ୍ଣ ଉପତ୍ୟକାମାନଙ୍କରେ ଚାଲିଛନ୍ତି ଧାଡ଼ି ଧାଡ଼ି ପୁରୁଷ, ସ୍ତ୍ରୀ, ପିଲା, କୁକୁର । ସବୁଆଡ଼େ ତ ଟାଙ୍ଗରା ! କି ଜନ୍ତୁ ଶିକାର କରିବେ ସେମାନେ ? ଜଣେ ଆଦିବାସୀକୁ ସେଇ ପ୍ରଶ୍ନ ପଚାରିଦେଲି । ସେ କହିଲା, 'କିଛି ନ ମିଳିଲେ ଡମଣା ସାପ ମାରିବୁ । ଆମେ ମରିବୁ, ନଇଲେ କିଛି ଗୋଟାଏ ଜନ୍ତୁ ମାରିବୁ ।' କହୁଥିବା ଲୋକଟିର କାନ୍ଧରେ ଗୋଟିଏ ବାଡ଼ିରୁ ଓହଳିଥିଲେ ଚାରୋଟି ଶିଆଳଛୁଆ । ଆମ ସମ୍ମୁଖରେ ସୁନାବେଡ଼ାର 'ହାଲ୍' ଗେଷ୍ଟହାଉସ ନିକଟରେ କେତୋଟି ଆଦିବାସୀ ଝିଅ ଅଣ୍ଟାରେ ହାତକୁ ହାତ ଛନ୍ଦି ପରସ୍ତେ ନାଚିଗଲେ । 'ପରଜା' ଓ 'ଅମୃତର ସନ୍ତାନ'ରେ ଏପରି ନାଚ ଓ ଶିକାରର ବର୍ଣ୍ଣନା ପର୍ଯ୍ୟାପ୍ତ । କିନ୍ତୁ ସେ ନାଚ ଓ ଶିକାର ସହରିଆବାବୁମାନଙ୍କୁ ଖୁସି କରାଇ ପଇସାମାଗିବାକୁ ନଥିଲା । ଆଦିବାସୀ ଜୀବନ ନିଶ୍ଚିତ ଭାବରେ ବଦଳିଯାଉଛି ଯା ଭିତରେ । ରାସ୍ତାରେ ଆମକୁ ଅଟକାଉଥିଲେ ଦଳ ଦଳ ଯୁବକ, ଯୁବତୀ, ପିଲା । ଆମ ଆଡ଼କୁ ବଢ଼ାଉଥିଲେ ଟିଣ ଥାଳିରେ କେତୋଟା ଚମ୍ପାଫୁଲ, ମନ୍ତୁରା ଚାଉଳ । 'ବରଷକରେ ଗୋଟେ ଦିନ ।' ଅଳି କରୁଥିଲେ ସେମାନେ । କି ଭୟଙ୍କର ଭାବେ

ବଦଳିଯାଇଛି ଆଦିବାସୀ ଜୀବନ । ପାହାଡ଼ ଝରଣାରୁ ବିଦ୍ୟୁତ ଆହରଣ କଲେ ଝରଣାଟି ଯିବ କୁଆଡ଼େ ? ହୁଏତ କେବଳ ରହିବ ଫଟୋଗ୍ରାଫରେ, ପେଣ୍ଟିଂରେ, ଚଳଚ୍ଚିତ୍ରରେ ।

ସୁନାବେଡ଼ା କିମ୍ବା କୋରାପୁଟର ସ୍ଥାନୀୟ ଲୋକେ କିନ୍ତୁ ଆମ ସହିତ କୋରାପୁଟରେ ପ୍ରାକୃତିକ ପରିବେଶ କିମ୍ବା ଆଦିବାସୀ ଜୀବନ ସଂର୍ପକରେ ଆଲୋଚନା କରିବାକୁ ଆଗ୍ରହୀ ନ ଥିଲେ । ସେଇ ଗୋଟିଏ ସମସ୍ୟା ଉପରେ ସମସ୍ତେ ଉତ୍ତେଜିତ । ଓଡ଼ିଆ ଭାଷା ଓ ସଂସ୍କୃତିର ସୁରକ୍ଷା । କଲେକ୍ଟରଙ୍କଠାରୁ ହାଇ ଗେଷ୍ଟ ହାଉସର ପାତ୍ରବାବୁଙ୍କ ପର୍ଯ୍ୟନ୍ତ ସମସ୍ତେ ଓଡ଼ିଆ ଭାଷାର ଭବିଷ୍ୟତ ସମ୍ପର୍କରେ ଚିନ୍ତିତ । କୋରାପୁଟ ଜିଲାରେ ଆଦିବାସୀଙ୍କ ସଂଖ୍ୟା ଶତକଡ଼ା ଅଠଷଠୀ, ଓଡ଼ିଆ ଅଠର, ତେଲୁଗୁ ଚଉଦ । ସୁନାବେଡ଼ାରେ ଓଡ଼ିଆଙ୍କ ସଂଖ୍ୟା ଶତକଡ଼ା ଚାଳିଶ । ମାଛକୁଣ୍ଡରେ ଓ ରାୟଗଡ଼ାରେ ଓଡ଼ିଆଙ୍କ ଅପେକ୍ଷା ତେଲୁଗୁଙ୍କ ସଂଖ୍ୟା ବେଶୀ । ଆଜିର ଶିଳ୍ପବିପ୍ଳବ କୋରାପୁଟର ପ୍ରାକୃତିକ ଭୂଗୋଳ ସାଙ୍ଗକୁ ମାନବିକ ଭୂଗୋଳକୁ ବିପର୍ଯ୍ୟସ୍ତ କରିବାର ସମ୍ଭାବନା ଯଥେଷ୍ଟ । ଯଦି ଏହି ଶିଳ୍ପବିପ୍ଳବର ପରିଣତି ହୁଏ କୋରାପୁଟରେ ଓଡ଼ିଆଭାଷା, ସଂସ୍କୃତିର ମୃତ୍ୟୁ, ତେବେ ଏ ବିପ୍ଳବ କେତେଦୂର ଯଥାର୍ଥ ?

ଓଡ଼ିଶାର ବୁଦ୍ଧିଜୀବୀଙ୍କ ଆଗରେ ଆଜି ସୁନାବେଡ଼ା ଓ କୋରାପୁଟ ଏକ ବିରାଟ ଆହ୍ୱାନ । ତାହାର ସମ୍ମୁଖୀନ ହେବାକୁ ସେମାନେ ବାଧ୍ୟ । ଏଇ ପରିପ୍ରେକ୍ଷୀରେ ଆଜିର ଏଇ ସ୍ଲୋଗାନ – 'ଚାଲନ୍ତୁ ସୁନାବେଡ଼ା ।' ❐

(୧୯୮୦)

# ଯାତ୍ରା ଡାଏରୀ : ଆଠମଲ୍ଲିକ

ଛଅ ଘଣ୍ଟାର ରୌଦ୍ର ଓ ଉତ୍ତାପ ଅତିକ୍ରମ କରି ସନ୍ଧ୍ୟାରେ ପହଞ୍ଚିଲି ଆଠମଲ୍ଲିକରେ । ସ୍ଥାନୀୟ ପଞ୍ଚଧାରା ସାହିତ୍ୟ ସଂସଦର ବାର୍ଷିକ ଉତ୍ସବରେ ଯୋଗଦେବା ଥିଲା ଯାତ୍ରାର ଉଦ୍ଦେଶ୍ୟ ।

ମୋତେ ଉତ୍ସବକୁ ନିମନ୍ତ୍ରଣ କରିଥିଲେ ଶ୍ରୀ ପ୍ରଦୀପ କୁମାର ମହାନନ୍ଦିଆ । ସୁଇଡେ଼ନର ଓଡ଼ିଆ ଶିଳ୍ପୀ ମୋର ବନ୍ଧୁ ପ୍ରଦ୍ୟୁମ୍ନ କୁମାର ମହାନନ୍ଦିଆଙ୍କର ସେ ସାନଭାଇ । ବାଟରେ ଭାବୁଥିଲି, ଏପରି ଗ୍ରୀଷ୍ମରେ ଆସିବାର ହୁଏତ ଆବଶ୍ୟକତା ନଥିଲା । ଆଠମଲ୍ଲିକରେ ପହଞ୍ଚିବା ପୂର୍ବରୁ ପ୍ରଥମେ ଦୃଶ୍ୟମାନ ହେଲା ପଞ୍ଚଧାରା ପର୍ବତମାଳା । ନୀଳ, ସମୁଚ୍ଚ, ଗମ୍ଭୀର । ଅନୁଭବକଲି, ଗୋଟିଏ ପୃଥିବୀକୁ ପଛରେ ପକାଇ ମୁଁ ପହଞ୍ଚିସାରିଛି ଆଉ ଗୋଟିଏ ପୃଥିବୀରେ । କହିଲି ପ୍ରଦୀପକୁ, 'ମାତ୍ର, କେତୋଟି ଘଣ୍ଟା ପାଇଁ ଭୁବନେଶ୍ୱରରୁ ଏଠାକୁ ଆସିବା ମୋର ଉଚିତ ହୋଇନାହିଁ । ଅନ୍ତତଃ ଦୁଇଦିନ ପାଇଁ ଏଠାକୁ ଆସିବାର ଥିଲା ।'

ଅଙ୍କାବଙ୍କା କଳା ପିଚୁରାସ୍ତାର ଦୁଇ ପାର୍ଶ୍ୱରେ ପାହାଡ଼, ଝରଣା, ନିବିଡ଼ ବୃକ୍ଷଲତା । ମାଟି, ଛଣ, ବାଉଁଶର ଆଦିମ ଗାଁଆସବୁ । ଆଦିବାସୀ ମଣିଷ ଓ ଗାଈପଲ । ଏହାହିଁ ଆଠମଲ୍ଲିକ । ଏହା ହିଁ ଓଡ଼ିଶା ଭୂମି ।

ଆଠମଲ୍ଲିକରେ ପହଞ୍ଚୁ ପହଞ୍ଚୁ ପ୍ରଗଲ୍‌ଭ ହୋଇପଡ଼ିଲେ ମୋ କାର୍‌ର ଅନ୍ୟତମ ସହଯାତ୍ରୀ ଶ୍ରୀ ଜୟନାରାୟଣ ଦାସ । ଅବସରପ୍ରାପ୍ତ ପ୍ରଧାନଶିକ୍ଷକ, ସାହିତ୍ୟପ୍ରେମୀ, ପଞ୍ଚଧାରା ସାହିତ୍ୟ ସଂସଦର ସମ୍ପାଦକ । ଅନର୍ଗଳ ଗପି ଚାଲିଲେ ଆଠମଲ୍ଲିକର ଅତୀତ ଓ ବର୍ତ୍ତମାନ ।

ଓଡ଼ିଆ ସାହିତ୍ୟକୁ ଆଠମଲ୍ଲିକର ଅବଦାନ ଅନେକ । ରାଧାନାଥ ରାୟ, ଶଶୀଭୂଷଣ ରାୟ, ମଧୁସୂଦନ ରାଓ, ମାୟାଧର ମାନସିଂହ, ବାଞ୍ଛାନିଧି ଦାଶ-ସମସ୍ତେ ଆସିଛନ୍ତି ଆଠମଲ୍ଲିକ ଓ ପ୍ରେରଣା ପାଇଛନ୍ତି ସେମାନଙ୍କ ସାହିତ୍ୟ ସୃଷ୍ଟି ପାଇଁ । ରାଧାନାଥ ତାଙ୍କ 'ମହାଯାତ୍ରା'ରେ ପଞ୍ଚଧାରା ପର୍ବତର ଉଲ୍ଲେଖ କରିଛନ୍ତି । 'ତୁଳସୀ ସ୍ତବକ' ସେ ଉତ୍ସର୍ଗ କରିଛନ୍ତି ଆଠମଲ୍ଲିକର ରାଜା ମହେନ୍ଦ୍ର ଦେଓଙ୍କୁ । ଶଶୀଭୂଷଣ ରାୟ ଲେଖିଛନ୍ତି 'ଆଠମଲ୍ଲିକ ଅନୁଭୂତି' । ବାଞ୍ଛାନିଧି ଦାଶ ଲେଖିଛନ୍ତି 'ଦେଉଳଝରୀରେ କବିର ସ୍ୱପ୍ନ' । ଦେଉଳଝରୀ ଆଠମଲ୍ଲିକର ଏକ ଉଷ୍ଣପ୍ରସ୍ରବଣ ।

'ଆମ ଆଠମଲ୍ଲିକ କିନ୍ତୁ ଅବହେଳିତ । ଆମ ଏଠାରେ କେନ୍ଦୁପତ୍ରରୁ ସରକାରଙ୍କୁ ରାଜସ୍ୱ ମିଳେ ଲକ୍ଷ ଲକ୍ଷ ଟଙ୍କା । କିନ୍ତୁ ଏ ଟଙ୍କା ଏଠାରେ ଖର୍ଚ୍ଚ ହୁଏନାହିଁ । ଏ ବର୍ଷ ଭୟଙ୍କର ମରୁଡ଼ି । ପାଣି ବିନା ହାହାକାର । କମିଶନରଙ୍କୁ କହିଲୁ - ସେ ହସିଲେ । କିଛି ହେଲା ନାହିଁ । ଯାହା ବା ଟଙ୍କା ଆସେ, ଲୋକଙ୍କ ପାଇଁ ଖର୍ଚ୍ଚ ହୁଏ ନାହିଁ । ଏଇ ଦେଖନ୍ତୁ ଆଠମଲ୍ଲିକର କଲେଜ । କଲେଜ ପାଚେରୀ ତିଆରିପାଇଁ ମାଟି ଖୋଳା ହୋଇ ବିଲ୍ କରି ଟଙ୍କା ନିଆଗଲା । ପୁଣି ସେଇମାଟି ଖୋଳାପାଇଁ ପୁଷ୍କରିଣୀ ନିର୍ମାଣ ନାମରେ ଆଉଥରେ ବିଲ୍ କରି ଟଙ୍କା ନିଆଗଲା । ପୁଷ୍କରିଣୀ କାହିଁ ?'

ଆମ ସମ୍ମୁଖରେ କଲେଜଟିଏ ଓ ତିନି/ଚାରି ଫୁଟ ମାଟି ଖୋଳା ହୋଇଥିବା ଶୁଖିଲା ଜମିଖଣ୍ଡେ । ସରକାରୀ ଫାଇଲ୍‌ରେ ତାହାହିଁ ପୁଷ୍କରିଣୀ । ସରକାରୀ ଅବହେଳା ଓ ଦୁର୍ନୀତି ସତ୍ତ୍ୱେ ଆଠମଲ୍ଲିକର ସାହିତ୍ୟ ଓ ସଂସ୍କୃତି ଯେ ଏତେ ଜୀବନ୍ତ, ଏଥିରେ ଆଶ୍ଚର୍ଯ୍ୟ ହେବାର କାରଣ ଥିଲା ହୁଏତ । ଏଥିପାଇଁ ଦାୟୀ ପ୍ରକୃତିର ଅପୂର୍ବ ସୌନ୍ଦର୍ଯ୍ୟ ଓ ସାଧାରଣ ମଣିଷମାନଙ୍କ ସ୍ୱଚ୍ଛ ମନୋଭାବ । ସେଦିନ ସନ୍ଧ୍ୟାପରେ ସହରରେ ବିଦ୍ୟୁତ୍ ଆଲୋକ ନଥିଲା । ତଥାପି ସ୍ଥାନୀୟ ସଭାଘରେ ଉପସ୍ଥିତ ଥିଲେ ବହୁ ବୁଦ୍ଧିଜୀବୀ ଓ ଛାତ୍ରଛାତ୍ରୀ । ସଭାରେ ସଭାପତିତ୍ୱ କଲେ ଔପନ୍ୟାସିକ ଯମେଶ୍ୱର ମିଶ୍ର । 'ଖମାରୀ', 'ଗଡ଼ତିଆ' ପ୍ରଭୃତି ବହୁ ଉପନ୍ୟାସର ଲେଖକ । ବୟସ ପଞ୍ଚସ୍ତରୀ ଉପରେ । ସରଳ, ଅମାୟିକ, ଅବସରପ୍ରାପ୍ତ ଶିକ୍ଷକ । ଏପରି ଗୁଣୀ ବ୍ୟକ୍ତିଙ୍କୁ ଓଡ଼ିଶାର କେତେଜଣ ସମାଲୋଚକ, କେତୋଟି ସାହିତ୍ୟ ଅନୁଷ୍ଠାନ ସ୍ମରଣ କରନ୍ତି ?

ପାଞ୍ଚଧାରା ସାହିତ୍ୟ ପୁରସ୍କାର ସେଦିନ ପ୍ରଦାନ କରାଗଲା ଶୁଭେନ୍ଦୁ ମୋହନ ଶ୍ରୀଚନ୍ଦନ ସିଂହଙ୍କୁ । ସେ ମହାଶୟ ରଚନା କରିଛନ୍ତି ଏକଶତରୁ ଅଧିକ ଓଡ଼ିଆ ପୁସ୍ତକ । ଗୌରୀଶଙ୍କର ରାୟଙ୍କ ସମ୍ପର୍କରେ ଲିଖିତ ତାଙ୍କର 'ଶତାବ୍ଦୀ ପୁରୁଷ' ଏକ ମୂଲ୍ୟବାନ କୃତି । ତା'ଙ୍କୁ କେତେଜଣ ଚିହ୍ନନ୍ତି ଓଡ଼ିଶାରେ ?

ସାହିତ୍ୟ ସଭାରେ ଉପସ୍ଥିତ ଥିଲେ ନାଟ୍ୟକାର ଶ୍ରୀ ତ୍ରିପୁରାରି ଶ୍ରୀହରିଚନ୍ଦନ ସିଂହ, କବି ଶ୍ରୀମତୀ ମିନାକ୍ଷୀ ଶ୍ରୀଚନ୍ଦନ ସିଂହ, ପ୍ରାବନ୍ଧିକ ଶ୍ରୀ ପୂର୍ଣ୍ଣଚନ୍ଦ୍ର ମିଶ୍ର ଓ ଅନ୍ୟମାନେ । ନୀରବରେ ସେମାନେ ସୃଷ୍ଟି କରିଚାଲିଛନ୍ତି ସେମାନଙ୍କ ନାଟକ, କବିତା, ପ୍ରବନ୍ଧ । ସେମାନଙ୍କୁ ଉତ୍ସାହ ପ୍ରଦାନ କରିବାରେ ବିଫଳ ହୋଇଛନ୍ତି ଆମର ସମାଲୋଚକ, ସରକାରୀ/ବେସରକାରୀ ସାହିତ୍ୟ ଅନୁଷ୍ଠାନମାନେ । ସେମାନଙ୍କ ଶକ୍ତି

ଓ ପ୍ରେରଣାର ଉତ୍ସ ଆଠମଲ୍ଲିକର ପାହାଡ଼, ଝରଣା, ବୃକ୍ଷଲତା ଓ ସାଧାରଣ ମଣିଷମାନେ । ସେଦିନ ଆଲୋଚନା ସଭାରେ ଯେପରି ଉତ୍ସାହ, ଆନନ୍ଦ ଓ ଆବେଗ ଲକ୍ଷ୍ୟ କଲି, ତାହା କଟକ ବା ଭୁବନେଶ୍ୱରର ସାହିତ୍ୟ ସଭାରେ ବିରଳ । ଆଠମଲ୍ଲିକ ହୁଏତ ଆଧୁନିକ ଜୀବନ ଓ ସାହିତ୍ୟଠାରୁ ଦୂରରେ । କିନ୍ତୁ ଭାବ ଯଦି ସାହିତ୍ୟର ପ୍ରାଣ ହୁଏ, ଆଠମଲ୍ଲିକର କବି, ଲେଖକମାନଙ୍କ ସୃଷ୍ଟିରେ ସେ ଭାବର ଅଭାବ ନାହିଁ ଆଦୌ ।

ଫେରିବା ରାସ୍ତାରେ ନିବିଡ଼ ଜଙ୍ଗଲରେ ହାତୀ ଭୟ ଓ ନୂତନ ବନ୍ଧୁମାନଙ୍କୁ ଭେଟିଥିବାର ଆନନ୍ଦ । ପଞ୍ଚଧାରା ସାହିତ୍ୟ ସଂସଦର ଏଇ ଚମତ୍କାର ସଭାଟିର ଆୟୋଜନ କରିଥିଲେ ସ୍ଥାନୀୟ ତହସିଲଦାର, ସୁଲେଖକ ଶ୍ରୀ ସନାତନ ମଲ୍ଲିକ । ତାଙ୍କ ଲିଖିତ 'ପଞ୍ଚଧାରା ଆଜୁଆଲେ' ଆଠମଲ୍ଲିକ ସମ୍ପର୍କରେ ଏକ ତଥ୍ୟପୂର୍ଣ୍ଣ ଗ୍ରନ୍ଥ । ଓଡ଼ିଶାର ବିଭିନ୍ନ ଅଞ୍ଚଳର ଇତିହାସ ଓ ସଂସ୍କୃତି ସମ୍ପର୍କରେ ଗ୍ରନ୍ଥମାନ ରଚିତ ନହେଲେ ଓଡ଼ିଶାର ପୂର୍ଣ୍ଣାଙ୍ଗ ଚିତ୍ର ସ୍ପଷ୍ଟ ହେବନାହିଁ ।

ଆଠମଲ୍ଲିକ ମୋ ପାଇଁ ଏକ ସ୍ମରଣୀୟ ସ୍ମୃତି । ❒

(୧୯୯୭)

# 'ମେଚିସ୍ ନାଇନ'

ଜ୍ୟୋତିବିହାର ଗେଷ୍ଟହାଉସଟିର ଉପସ୍ଥିତି ବାସ୍ତବିକ ଚମତ୍କାର । ଏକ ବିସ୍ତୃତ ପାର୍ବତ୍ୟ ଲ୍ୟାଣ୍ଡସ୍କେପରେ ଉଚ୍ଚଭୂମି ଉପରେ ନିର୍ମିତ ହୋଇଛି ଦ୍ୱିତଳ ପ୍ରାସାଦଟିଏ । ଗେଷ୍ଟହାଉସ୍‌ର ଏକପାର୍ଶ୍ୱରେ ପ୍ରକାଣ୍ଡ ପାହାଡ଼ ଓ ପାହାଡ଼ତଳେ ହ୍ରଦଟିଏ । ଅନ୍ୟ ଦିଗରେ ଅନୁଚ୍ଚ ପାହାଡ଼ସବୁ ଓ ଇତସ୍ତତଃ ଗୁଳ୍ମରାଜି ।

ସନ୍ଧ୍ୟାରେ ଗେଷ୍ଟହାଉସ ସମ୍ମୁଖରେ ଚେୟାରଟି ଉପରେ ବସିଥିଲି ଏକାକୀ । ଏପ୍ରିଲ ମଧ୍ୟାହ୍ନର ଉତ୍ତାପ ପରେ ସନ୍ଧ୍ୟାର ପବନ ଥିଲା ଏକାନ୍ତ ଶୀତଳ ଓ ରୁଚିକର । ଗେଷ୍ଟହାଉସର ପୂଜାରୀକୁ ଡାକି କହିଲି 'କପେ ଚା' ଆଣ' । ସେ ଯେପରି ମୋ ଠାରୁ ଏଭଳି ନିର୍ଦ୍ଦେଶ ଆଶା କରୁ ଥିଲା । ପୂର୍ବରୁ ପ୍ରସ୍ତୁତ ଥିଲାଭଳି କହିଲା, 'ମେଚିସ୍ ନାଇନ' ।

ଗେଷ୍ଟହାଉସ୍‌ଟି ଆଧୁନିକ ରୁଚିସମ୍ପନ୍ନ । ପ୍ରଶସ୍ତ ଡାଇନିଂ ହଲ ଓ ଲାଉଞ୍ଜ । ମୋ ଦେଖିବାରେ ଗେଷ୍ଟହାସ୍‌ରେ ତିନିଜଣ କର୍ମଚାରୀ ଅତିଥିମାନଙ୍କ ପରିଚର୍ଯ୍ୟା ପାଇଁ ନିଯୁକ୍ତ । ତଥାପି ସେଦିନର ଅତିଥିଙ୍କ ପାଇଁ ଚା' ହୋଇ ପାରିଲାନାହିଁ । କାରଣ 'ମେଚିସ୍ ନାଇନ'।

ସନ୍ଧ୍ୟା ଓହ୍ଲାଇ ଆସୁଥିଲା । ଅନେକଗୁଡ଼ିଏ ଧୋବ ଫର ଫର ବଗ ନେଳିପାହାଡ଼ର ପୃଷ୍ଠଭୂମିରେ ଫୁଲର ପାଖୁଡ଼ା ପରି ସନ୍ଧ୍ୟାପବନରେ ଭାସି ବୁଲୁଥାନ୍ତି । ଆଉ କେତୋଟି ଚଢ଼େଇ–ପେଟତଳ ଧଳା, ପିଠି ଓ ପର କଳା – କେଉଁଠୁ ଗୋଡ଼ିଆଗୋଡ଼ି ହୋଇ ଆସିଲେ ଓ ଅଭିଭାବକଙ୍କ ନାଲି ଆଖିକୁ ଖାତିର୍ କରୁନଥିବା ଦୁଷ୍ଟପିଲାଙ୍କପରି ହ୍ରଦ ଜଳରେ କ୍ରୀଡ଼ା କରିବାକୁ ଲାଗିଲେ । କେଉଁଠି ବାଦବୁଦିଆ ହୋଇ କେତୋଟି ଚଢ଼େଇ କ୍ରମାଗତ ଶବ୍ଦ କରି ଚାଲିଥିଲେ । ସେମାନଙ୍କର ସ୍ୱର ଲାଗୁଥିଲା ପରିଚିତ । କେଉଁ ଚଢ଼େଇ ସେମାନେ ? କୁମ୍ଭାଟୁଆ, ଡାହୁକ ନା ହଂସରାଳି ? ସେମାନେ ଥିଲେ ଅଦୃଶ୍ୟ କିନ୍ତୁ ସେମାନଙ୍କ କ୍ଷୀଣ ସ୍ୱର ନିକଟବର୍ତ୍ତୀ ପର୍ବତର ଗାମ୍ଭୀର୍ଯ୍ୟ ଓ ଦର୍ପକୁ ତିଳେ ତିଳେ ଚୂର୍ଣ୍ଣ କରୁଥିଲା ଯେପରି ।

'ମେଚିସ୍' ଅଭାବରୁ ଗେଷ୍ଟହାଉସରେ ଚା' ନ ହୋଇପାରିବାରୁ ମୁଁ ଆସ୍ୱସ୍ତି ଅନୁଭବ କରୁଥିଲି । ସକାଳେ ଗେଷ୍ଟହାଉସକୁ ଆସି ଦେଖିଲି–ମୋ ରୁମ୍‌ସାରା ଧୂଳି,

ବେସିନରେ ନାଳି ପାନପିକ, ବାଥରୁମ୍ ବାଲ୍‌ଟିରେ କେବେଠୁ କେଜାଣି ପାଣି ରଖାଯାଇଛି, ବାଲଟି ଭିତରେ ଜମାଟ୍‌ବନ୍ଧା ଶିଉଳି । ଏତେ ଚମତ୍କାର ପରିବେଶରେ ଏଡେ ସୁନ୍ଦର ଗେଷ୍ଟହାଉସ । କିନ୍ତୁ ଏତେ ଅପରିଷ୍କାର କାହିଁକି ? ଚା'ନ ପିଇବାର ବିରକ୍ତିଫଳରେ ଗେଷ୍ଟହାଉସରେ ଅନ୍ୟାନ୍ୟ ଅବ୍ୟବସ୍ଥାସବୁ ଆଖିରେ ପଡ଼ିଲା - ଗେଷ୍ଟହାଉସ ନିକଟରେ ଲଗାଯାଇଥିବା ଫୁଲଗଛଗୁଡ଼ିକ ପାଣି ଓ ଯତ୍ନ ଅଭାବରୁ ଜାଳ ହେବାକୁ ବସିଲେଣି । ଗେଷ୍ଟହାଉସ୍ ସମ୍ମୁଖରେ ଫିଙ୍ଗାହୋଇଛି ମୁଣ୍ଡା ଛାଞ୍ଚୁଣି ଓ ଅନ୍ୟାନ୍ୟ ଅଳିଆ ।

ବିରକ୍ତି ଅନୁଭବ କଲି । ଖାଲି ଜ୍ୟୋତିବିହାର କି ବାଣୀବିହାର ନୁହେଁ, ସାରା ଦେଶରେ ସେଇ ଗୋଟିଏ କଥା ହିଁ ଶୁଣିବାକୁ ମିଳୁଛି - 'ମେଚିସ୍ ନାଇନ'। କେହି ପ୍ରସ୍ତୁତ ନୁହନ୍ତି କାମ କରିବାକୁ । କୋଠା ତିଆରିହେଉଚି, ଚଟାଣ କୋଇଲାକଳା କାହିଁକି ? ବଗିଚା ବନାଇବା ପାଇଁ ଦଳ ଦଳ ମାଳି ଦରମା ନେଉଛନ୍ତି । କିନ୍ତୁ ବଗିଚା କାହିଁ ? ଈଶ୍ୱର ଓ ଅନ୍ୟାନ୍ୟ ଉଚ୍ଚ ଭାବରେ ନିମଜ୍ଜିତ ଭାରତୀୟମାନେ ଆଖିତଳର ଦୃଶ୍ୟ ଦେଖିପାରନ୍ତି ନାହିଁ । କୌଣସି ବିଦେଶୀ ଲେଖକ ଏଭଳି ଦୃଶ୍ୟ ପ୍ରତି ପ୍ରତି ଆଙ୍ଗୁଳି ନିର୍ଦ୍ଦେଶକଲେ ଦେଶପ୍ରେମୀ ଭାରତୀୟମାନେ ଚିତ୍କାର କରିଉଠନ୍ତି - ନର୍ଦ୍ଦମା- ପରିଦର୍ଶନକାରୀ ! ନିନ୍ଦୁକ ! ଭାରତର ଅତୀତ ଗୌରବମୟ ଓ ମହୀୟାନ ଥିଲା, ଜାଣନାହିଁ ?

ବିପୁଳ ସୌନ୍ଦର୍ଯ୍ୟ ଓ ସମ୍ପଦର ଦେଶ ଭାରତବର୍ଷ । କିନ୍ତୁ 'ମେଚିସ୍' ଅଭାବରୁ ଅତିଥିଙ୍କୁ କପେ ଚା' ଦେବା ମଧ୍ୟ ଆମ ଶକ୍ତିର ବହିର୍ଭୂତ ।☐

(୧୯୮୦)

# ଯାତ୍ରା ଡାଏରୀ : ଭୁବନେଶ୍ୱରରୁ ବଲାଙ୍ଗୀର

## ବଉଦରେ ଶୁଭେନାହିଁ କଟକର ଭାଷା :

ଚାରିଛକରେ ପହଞ୍ଚିଲାବେଳକୁ ସଞ୍ଜ ଗଡ଼ିଯାଇଥିଲା । ଚା' ଖାଇବାପାଇଁ କୌଣସି ରେଷ୍ଟୋରାଁରେ ଅଟକିଲୁ । ଆମ ଦଳରେ ଥାଆନ୍ତି କେତେଜଣ ଅଧ୍ୟାପକ ଓ ଅଫିସର ।

ଚା' ଆସିବା ପାଇଁ ଅପେକ୍ଷା କରୁଥିବାବେଳେ କହିଲେ କେହିଜଣ, 'ରେଡ଼ିଓଟା ଖୋଲନ୍ତୁତ । ଓଡ଼ିଆ ଖବର ଶୁଣାଯାଉ ।'

ରେଡ଼ିଓ ଆସିଲା । କିନ୍ତୁ କଟକ କେନ୍ଦ୍ର ଧରୁନାହିଁ କାହିଁକି ?

ନମ୍ରତାର ସହିତ ଘୋଷଣା କଲେ ରେଷ୍ଟୋରାଁର ମାଲିକ 'ଏଠି କଟକ ସେଣ୍ଟର ଧରେନାହିଁ, ଆଜ୍ଞା !'

ବଉଦରେ ଶୁଭେନାହିଁ କଟକ କେନ୍ଦ୍ର ? ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ଭୁବନେଶ୍ୱରରୁ କାର୍ ଯୋଗେ ପ୍ରାୟ ସାଢ଼େ ତିନିଘଣ୍ଟାର ବାଟ ବଉଦର ଚାରିଛକ । ସେଠି ଶୁଭେନାହିଁ ଓଡ଼ିଶାର କୌଣସି ରେଡ଼ିଓ ସେଣ୍ଟରର କାର୍ଯ୍ୟକ୍ରମ - କଟକ, ସମ୍ବଲପୁର ବା ଜୟପୁରର ! ପାହାଡ଼ - ଜଙ୍ଗଲଘେରା ମଫସଲି ଇଲାକା ବଉଦକୁ କାଳକାଳକୁ ଅନ୍ଧାରରେ ରଖିବା କାହାର ପରିକଳ୍ପନା ?

ଆମକୁ ଆଶ୍ୱାସନା ଦେଲାଭଳି କହିଲେ ଆମର ଅଫିସର - ବନ୍ଧୁ, 'ରେଡ଼ିଓ ଟେଲିଭିଜନ ପ୍ରସାରଣରେ ଓଡ଼ିଶା ଭାରତରେ ସବୁଠାରୁ ପଛୁଆ । ୟୁ.ପି. ରେ ଚାଳିଶିଟି ଟି.ଭି. ସେଣ୍ଟର ଖୋଲିଥିଲାବେଳେ ଓଡ଼ିଶାରେ ମାତ୍ର ତିନୋଟି । କେନ୍ଦ୍ର ସରକାରଙ୍କୁ ଏ ସମ୍ପର୍କରେ ଲେଖି ଲେଖି ଆମେ ବିରକ୍ତ ହୋଇସାରିଲୁଣି !'

## ଦାରିଦ୍ର୍ୟ - ଶିକ୍ଷା

ଆମର ଅଫିସର-ବନ୍ଧୁ କଥା କହିବାରେ ଜଣେ କାରିଗର । ସରକାରୀ ଦପ୍ତରରେ ଜୀବନର ମୁଖ୍ୟ ଅଂଶ କଟାଇ ମଧ୍ୟ ସେ ରହିପାରିଛନ୍ତି ଅନେକାଂଶରେ ଅମାୟିକ, ରହସ୍ୟପ୍ରିୟ, ଏପରି କି ଅମଲାତନ୍ତ୍ରର ଦୋଷଦୁର୍ବଳତା ଚିହ୍ନିବାର କ୍ଷମତା ସେ ଏ ଯାବତ୍ ହରାଇନାହାନ୍ତି ।

'ଭୁବନେଶ୍ୱରରୁ ବଲାଙ୍ଗୀର ଆସିବା ବାଟରେ କି କି ଶିଳ୍ପ ଆମ ଆଖିରେ ପଡ଼େ ?' ବଲାଙ୍ଗୀରରେ ତାଙ୍କୁ ପଚାରିଲି ।

'ଉତ୍କଟ ଦାରିଦ୍ର୍ୟ-ଶିଳ୍ପ ।' ତାଙ୍କର ନିଶ୍ଚିତ ଉତ୍ତର ।

ଆଜିର ଓଡ଼ିଶାରେ ଶିଳ୍ପାୟନର କାନଅତଡ଼ା ପଡୁଥିଲାବେଳେ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ଆମ ଅଫିସର-ବନ୍ଧୁଙ୍କ ଉତ୍ତର ।

କୌଣସି ଶିଳ୍ପ ଦାୟିତ୍ୱରେ ଥିବା ଅନ୍ୟ ଜଣେ ଅଫିସର କହିଲେ, 'ଯାହା ବା ଶିଳ୍ପଗଡିଉଠୁଛି ଦେଶରେ, ସେଥିରେ ସାଧାରଣ ଲୋକେ ଉପକୃତ ହେଉନାହାନ୍ତି । ଲୋକଙ୍କର ଆବଶ୍ୟକତା ବା ପରିପାର୍ଶ୍ୱ ସହିତ ଆମ ଶିଳ୍ପ-ପରିକଳ୍ପନାର ସମ୍ପର୍କ ରହୁନାହିଁ । ପଞ୍ଜାବ ଯଦି ଆଜି ସବୁଠାରୁ ସମୃଦ୍ଧ, ଏହାର କାରଣ କୃଷି, ଶିଳ୍ପ ନୁହେଁ ।'

ଆଲୋଚନାଟି ବୌଦ୍ଧିକ ହୋଇ ପଡ଼ିବାର ଭୟ ଦେଖାଗଲା । ବୁଦ୍ଧିଜୀବୀମାନେ ଗତ ତିରିଶ ବର୍ଷରେ ଆମ ଅର୍ଥନୀତିକୁ ସୁଧାରିବା ପାଇଁ ବହୁ ଯୋଜନା ଓ ଗବେଷଣା କରିସାରଛନ୍ତି । କିନ୍ତୁ ସେଥିରେ କିଏ ଉପକୃତ ହୋଇଛନ୍ତି ସେମାନଙ୍କ ଛଡ଼ା ?

ଭୁବନେଶ୍ୱରରୁ ବଲାଙ୍ଗୀର ଯିବାବାଟରେ ଆପାତତଃ ଯେଉଁ ଦୃଶ୍ୟ ଦେଖିବାକୁ ମିଳେ, ସେଥିରୁ ବୁଝିହୁଏ, କଟକ ଭୁବନେଶ୍ୱର ଭଳି କେତେଟା ସହରକୁ ବାଦ୍‌ଦେଲେ ଗୋଟାକଯାକ ଓଡ଼ିଶା ମୋଟାମୋଟି ଯେମିତିଥିଲା ସେମିତି ରହିଛି - ସେମିତି ରହିଛି ଯୁଗ ଯୁଗ ହେଲା । ଗାଉଁଲି ମଣିଷ ଭାଲୁ ଭୟରେ ନିଆଁ ହୁଳାଧରି ଅଧରାତିରେ ବାଟ ଚାଲିଛି; ଖଟରେ ରୋଗୀକୁ ଶୁଆଇ ବୋହିବାକୁ ପଡୁଛି କୋଶ କୋଶ ବାଟ । କାଁ ଭାଁ ଅବଶ୍ୟ ବିଜୁଳି ଆଲୁଅ ଜଳୁଛି ଗାଁ ଦାଣ୍ଡରେ ।

ଏବଂ ସେଇ ଆଲୁଅରେ ଅଧିକ ତେଜୀୟାନ ଦିଶୁଛି ଆମର ସବୁଠାରୁ ବଡ଼ ଶିଳ୍ପ - ଦାରିଦ୍ର୍ୟ ଶିଳ୍ପ !

**ଓଡ଼ିଶାର ନୀଳା ଓ ରାଜସ୍ଥାନର ଜହୁରୀ :**

ପଶ୍ଚିମ ଓଡ଼ିଶାର କୌଣସି କୌଣସି ଅଞ୍ଚଳରେ ମୂଲ୍ୟବାନ ପଥର ମିଳୁଥିବା ଓ ତାହା ନିରାପଦରେ ଓଡ଼ିଶା ବାହାରକୁ ଚାଲାଣ ହୋଇଯାଉଥିବାର ପୂର୍ବରୁ ଶୁଣିଥିଲି । ବର୍ତ୍ତମାନ ବଲାଙ୍ଗୀରରେ ପୁନର୍ବାର ସେ କାହାଣୀ ଶୁଣିବାକୁ ମିଳିଲା ।

'ସ୍ଥାନୀୟ ଲୋକେ ବହୁକାଳଯାଏଁ ଏଇ ପଥରଗୁଡ଼ିକର ମୂଲ୍ୟ ବୁଝି ନ ଥିଲେ', କହିଲେ ପଶ୍ଚିମ ଓଡ଼ିଶାର ଜଣେ ବନ୍ଧୁ । 'କିନ୍ତୁ କେହି କେହି ମାରୱାଡ଼ି ରାଜସ୍ଥାନରୁ ଜହୁରୀ ଡକାଇ ମୂଲ୍ୟବାନ ପଥରସବୁ ଚିହ୍ନିଲେ । କେହିଜଣେ ଏଇ ପଥର ସଂଗ୍ରହ କରି ମାସକ ଭିତରେ ଚାଳିଶ ହଜାରରୁ ଅଧିକ ଟଙ୍କା ରୋଜଗାର କରିବାର ଶୁଣାଯାଏ ।

'ଏବେ କିନ୍ତୁ ଓଡ଼ିଶା ସରକାର ଦାମିକା ପଥରସବୁ ସଂଗ୍ରହ କରିବାରେ ଲାଗିଛନ୍ତି ।' ଆଉ ଜଣେ ତଥ୍ୟ ଯୋଗାଇଦେଲେ ।

'କିନ୍ତୁ ଓଡ଼ିଶା ସରକାର ଠୁଳ କରୁଛନ୍ତି ପଥର; ନୀଳା ଚାଲାଣ ହୋଇ ଯାଉଛି ବାହାରକୁ ।' ମନ୍ତବ୍ୟଦେଲେ ପଶ୍ଚିମ ଓଡ଼ଶାର ବନ୍ଧୁ ।

ଶହୀଦ-କବି ସୋମନାଥ :

ଧୂପ ସମ ନିଜ ଦେହ ଜାଳି

କିନ୍ତୁ କ୍ରୋଧେ କାହାପ୍ରତି

ଜଳି ନାହଁ ସୋମନାଥ !

ପରମ ସାଧକ ଆହେ ଯତି !

ପଡ଼ିଛି ଭାଳେଣି ଆଜି

ନ ମିଳଇ ତବ ପ୍ରତିକୃତି

ରଖିବାକୁ ହେବ ଆଜି

କି ଉପାୟେ ହଜିଗଲା ସ୍ମୃତି ?

ବଲାଙ୍ଗୀରର କବି ସୋମନାଥଙ୍କୁ ଶ୍ରଦ୍ଧାଞ୍ଜଳି ଅର୍ପଣକରି କାଳିନ୍ଦୀଚରଣ ଲେଖିଥିବା କବିତାରୁ ଏଇ ଉଦ୍ଧୃତି । କାଳିନ୍ଦିଚରଣ ସୋମନାଥଙ୍କ ପରିଚୟ ଏହିପରି ଦେଇଛନ୍ତି : 'କବି ସୋମନାଥ ହୋତୃଶର୍ମା ବଲାଙ୍ଗୀର ରାଜ୍ୟରେ ଜନ୍ମଗ୍ରହଣ କରିଥିଲେ । କଚେରୀରେ ସାମାନ୍ୟ ନବସିନ୍ଧା କାର୍ଯ୍ୟରେ ସେ ଜୀବିକା ନିର୍ବାହ କରୁଥିଲେ । ଦୁଃଖର ସଂସାରରେ ତାଙ୍କର କବିତା ଫୁଟିଉଠିଥିଲା । ଧନିକ ଓ କ୍ଷମତାସୀନ ଲୋକମାନଙ୍କ ଦ୍ୱାରସ୍ଥ ହୋଇ ସେ ସ୍ୱୀୟ ରଚନଗୁଡ଼ିକ ପ୍ରକାଶ କରିଥିଲେ ।'

ବଲାଙ୍ଗୀରରେ ନିକଟ ଭବିଷ୍ୟତରେ ଲେଖକ ସମ୍ମିଳନୀଟିଏ ଆୟୋଜିତ ହେବାର ପ୍ରସ୍ତୁତି ଚାଲିଛି । ସେହି ଅବସରରେ ସ୍ଥାନୀୟ ଟାଉନ ହଲରେ ସମବେତ ହୋଇଥିଲେ କେତେଜଣ ସ୍ଥାନୀୟ ଲେଖକ, ସାହିତ୍ୟପ୍ରେମୀ ଓ ପଦସ୍ଥ ଅଫିସର । ପ୍ରସଙ୍ଗକ୍ରମେ ସ୍ଥାନୀୟ କବିଲେଖକଙ୍କ ସ୍ମୃତିରେ ତୋରଣମାନ ନିର୍ମାଣ କରିବାର ପ୍ରସ୍ତାବହେଲା । କେହିଜଣେ ଗଙ୍ଗାଧର ମେହେରଙ୍କ ନାମ ଉଚ୍ଚାରଣକଲେ । ଆପାତତଃ ବଲାଙ୍ଗୀରର କୌଣସି କବି ବା ଲେଖକଙ୍କ ନାମ ସଭାଟିରେ କାହାକୁ ଜଣାନଥିଲା ।

ସୋମନାଥଙ୍କ ଭଳି ସାହିତ୍ୟସାଧକଙ୍କ ରାଜ୍ୟ ବଲାଙ୍ଗୀରରେ କିନ୍ତୁ ଓଡ଼ିଆ ସାହିତ୍ୟର ସ୍ଥିତି ମ୍ରିୟମାଣ । ସ୍ଥାନୀୟ ଅଧିକାଂଶ ବହିଦୋକାନରେ ମୁଖ୍ୟ ଆକର୍ଷଣ ଶସ୍ତା ହିନ୍ଦୀ ବହି । 'ଏଠି ହିନ୍ଦୀ ବହିର କାଟତି ବେଶି' - ସ୍ଥାନୀୟ ଜିପ ଡ୍ରାଇଭରର ଅଭିଯୋଗ ।

କିନ୍ତୁ ସୋମନାଥଙ୍କ ରାଜ୍ୟ ବଲାଙ୍ଗୀରରେ ଅଭାବ ରହି ନ ପାରେ ପ୍ରତିଭାର କିମ୍ବା ସାଧନାର ! ମାତ୍ର ଦୁଇଦିନର ରହଣି ମଧ୍ୟରେ ବଲାଙ୍ଗୀରର ଜଣେ କବିଙ୍କ କୁଟୀରରେ ଆକସ୍ମିକ ପହଞ୍ଚିଲୁ । ଆପାତତଃ କବି ଜଞ୍ଜାଳଗ୍ରସ୍ତ, ଆର୍ଥିକ ଅନାଟନରୁ ମୁକ୍ତ ନୁହଁନ୍ତି । ସୋମନାଥଙ୍କ ଭଳି ସେ ମଧ୍ୟ ସ୍ଥାନୀୟ କଚେରୀରେ ଜଣେ ନବସିନ୍ଧା ବା ମୋହରୀର । କିନ୍ତୁ ଦୁଃଖରୁ ହିଁ ତ କବିତାର ଜନ୍ମ !

ବହି ପରେ ବହି ସେ ଲେଖି ଚାଲିଛନ୍ତି - କାବ୍ୟ, କବିତା, ଅନୁବାଦ, ଉପନ୍ୟାସ । ତାଙ୍କ ଜୀବନରେ ଦାରିଦ୍ର୍ୟ ଥାଇପାରେ, କିନ୍ତୁ ମଳିନତା ନାହିଁ । ଆମ ସହିତ ଗୋଟିଏ ଘଣ୍ଟା ସାକ୍ଷାତରେ ସେ କେବଳ ତାଙ୍କର ସ୍ୱପ୍ନ ଓ ସାହିତ୍ୟ ସମ୍ପର୍କରେ ହିଁ ଗପୁଥିଲେ ! ସୋମନାଥଙ୍କ ରାଜ୍ୟ ବଲାଙ୍ଗୀରର କବି ଆଉ କେଉଁପରି ହୋଇଥାନ୍ତେ ? ☐

(୧୯୮୪)

# ଯାତ୍ରା ଡାଏରୀ : କରଞ୍ଜିଆ

**ଶାଳ ଜଙ୍ଗଲରେ ହେଲିପ୍ୟାଡ୍ :**

ଘଟଣାଟି ଶୁଣିଥିଲି କରଞ୍ଜିଆ କଲେଜର ଜନୈକ ଅଧ୍ୟାପକଙ୍କଠାରୁ ।

ମୟୂରଭଞ୍ଜରେ ଯୋଗ ଦେଇଥାନ୍ତି ନୂଆ ଜିଲ୍ଲାପାଳ କେହି । କିଛି ଗୋଟାଏ ଆଖିଦୃଶିଆ କାର୍ଯ୍ୟକରି ସରକାରୀ ବାଃ ବାଃ ନେବାକୁ ବ୍ୟାକୁଳ ହେଉଥାନ୍ତି । ତୁରନ୍ତ ଆଦେଶ ଦେଲେ, 'କାଟିପକାଅ ଦଶ ଏକର ଶାଳଜଙ୍ଗଲ । ହେଲିପ୍ୟାଡ୍ ବନାଇବା । ଭି.ଆଇ.ପି.ମାନେ କରଞ୍ଜିଆ ଆସିବାର ଅସୁବିଧା ହେବନାହିଁ ।'

କରଞ୍ଜିଆ କଲେଜ ସଂଲଗ୍ନ ଚମତ୍କାର ଶାଳଜଙ୍ଗଲଟିକୁ ନିର୍ମୂଳ କରିବା ଆରମ୍ଭ ହେଲା । ପରେ କିନ୍ତୁ କେଉଁ କାରଣରୁ କେଜାଣି, ହେଲିପ୍ୟାଡ୍ ପରିବର୍ତ୍ତେ ସ୍ଥାନଟି ପରିଣତହେଲା ଛାତ୍ରମାନଙ୍କ ଖେଳପଡ଼ିଆରେ ।

ତେବେ କେବଳ ସରକାରୀ ଅମଲା ନୁହନ୍ତି, ନେତା, ବ୍ୟବସାୟୀ, ଆଦିବାସୀ ଶ୍ରମିକ - ସମସ୍ତେ ନିରବଚ୍ଛିନ୍ନ ଉଦ୍ୟମ ଚାଲୁ ରଖିଛନ୍ତି କରଞ୍ଜିଆ ତଥା ମୟୂରଭଞ୍ଜ ଅଞ୍ଚଳରୁ ଜଙ୍ଗଲ, ବିଶେଷତଃ ଶାଳଜଙ୍ଗଲମାନ କାଟି ସଫା କରିବାରେ । କରଞ୍ଜିଆ ଡାକବଙ୍ଗଳାରେ କେତେଜଣ ଅଧ୍ୟାପକ ବେଶ୍ ଦୁଃଖରେ ସେଦିନସକାଳେ ଜଙ୍ଗଲକଟାର କାହାଣୀ ଶୁଣାଉଥିଲେ ।

କହିଲେ ଅଧ୍ୟାପକ ସିଂହ, 'ସମାଜର ବଡ଼ ବଡ଼ ଲୋକ ଏଠି ଚୋରାକାଠ ବ୍ୟବସାୟରେ ଜଡ଼ିତ । ଏଠାରୁ ନିୟମିତ ଟାଟାକୁ ଚାଲାଣ ହୋଇଥାଏ କାଠ ଓ କାଠ ସରଞ୍ଜାମ । ଏଠି ଦୁଇତିନିଶହ ଟଙ୍କାରେ ମଧ ଭଲ ପଲଙ୍କ ଆପଣ ପାଇ ପାରିବେ । ଟାଟାରେ ତା'ର ଦାମ ପନ୍ଦରଶହଟଙ୍କା ।'

ଏବଂ ବନ୍ଧୁଙ୍କ ଏହି କାହାଣୀ ବର୍ଣ୍ଣନା ସମୟରେ ଡାକବଙ୍ଗଳା ସାମ୍ନା ରାସ୍ତାରେ ଦୃଶ୍ୟ ହେଉଥିଲେ ଜଙ୍ଗଲକଟା ନାଟକର ନାୟକ–ନାୟିକା, କେତେଜଣ ନିରୀହ ଆଦିବାସୀ । ସେମାନଙ୍କ ମୁଣ୍ଡରେ ଶାଳପତ୍ର ଓ ଶାଳକାଠର ବୋଝ । ଠୁଙ୍ଗାପାଇଁ ଶାଳପତ୍ର ବିକ୍ରୀ କରିବାରେ ଆପତ୍ତି ନାହିଁ । କିନ୍ତୁ ଜାଳେଣି ପାଇଁ ଶାଳ ଗଛମାନ କାଟିପକାଇବା ଏକ ଜଘନ୍ୟ ଅପରାଧ । ଶାଳଗଛମାନ କାଟିବା ମାନେ ହିଁ ଶାଳଜଙ୍ଗଲ ଧ୍ୱଂସ କରିବା ।

ସରକାର ଓ ସାଧାରଣ ଲୋକଙ୍କ ସହଯୋଗରେ ବହୁ ଦୁରୂହ କାର୍ଯ୍ୟ ସାଧିତ ହୋଇପାରେ । ମୟୁରଭଞ୍ଜର ଶାଳଜଙ୍ଗଲ ନିର୍ମୂଳ କରିଦେବା କିବା କଥା !

**ଲେଖକ ଓ କରଞ୍ଜିଆ**

'ଶାନ୍ତନୁ ଆଚାର୍ଯ୍ୟଙ୍କ କରଞ୍ଜିଆ ଡାଏରୀ ପଢ଼ିଲେଣି ? କରଞ୍ଜିଆ ଜୀବନ ସମ୍ପର୍କରେ ଟିକ୍‌ନିଖ୍ ଲେଖିଛନ୍ତି ।'

ଅଧ୍ୟାପକ ଓ ଛାତ୍ରମାନେ ବାରମ୍ବାର ସେହି ବହିଟିର ଉଲ୍ଲେଖ କଲେ । କହିଲେ ଜଣେ, 'ଏଠାକୁ ଦୁଇଶହ କପି ଆସିଥିଲା । ସବୁ ବିକ୍ରୀ ହୋଇଯାଇଛି । ଆଉ ମିଳୁ ନାହିଁ ।'

କରଞ୍ଜିଆକୁ ଖିଚିଂ ଯିବା ରାସ୍ତାରେ ଅନୁଚ୍ଚ ଚୂନଧଉଳା ମନ୍ଦିରଟିକୁ ନିର୍ଦ୍ଦେଶକରି କହିଲେ ଜଣେ ଛାତ୍ର, ଏଇଟି ମଙ୍ଗଳା ମନ୍ଦିର । ଶାନ୍ତନୁବାବୁ ଏଇ ମନ୍ଦିରଟି କଥା ଲେଖିଛନ୍ତି ।'

'କରଞ୍ଜିଆ ଡାଏରୀ' ପ୍ରକାଶ ପାଇଛି ୧୯୮୪ରେ, ପୃଷ୍ଠାସଂଖ୍ୟା ୨୫୦ । ବହିଟି ସମ୍ପର୍କରେ ଗପୁଥିବା ଅଧ୍ୟାପକ ଓ ଛାତ୍ରମାନଙ୍କ ମଧ୍ୟରେ ସମସ୍ତେ ବହିଟି ପଢ଼ିଥିବେ ବୋଲି ଆଶା କରାଯାଉ ନାହିଁ । କିନ୍ତୁ ସେମାନଙ୍କର ଉତ୍ସାହ ଓ ଗର୍ବର କାରଣ ଏହି ଯେ ସେମାନଙ୍କ କରଞ୍ଜିଆ ଆଜି ସ୍ଥାନ ପାଇଛି ଓଡ଼ିଆ ସାହିତ୍ୟରେ ।

କୌଣସି ଅଞ୍ଚଳ ବା ମଣିଷଗୋଷ୍ଠୀ ସମ୍ପର୍କରେ ଲେଖକମାନେ ନ ଲେଖିବା ପର୍ଯ୍ୟନ୍ତ ସେ ଅଞ୍ଚଳ ବା ମଣିଷଗୋଷ୍ଠୀର ଚେହେରା ବା ରୂପରେଖ ସ୍ପଷ୍ଟ ହୁଏନାହିଁ । ବସ୍ତୁତଃ ଲେଖକମାନେ ହିଁ ଆମ ମନରେ ବିଭିନ୍ନ ଅଞ୍ଚଳ ବା ମଣିଷଗୋଷ୍ଠୀ ସମ୍ପର୍କରେ ନିର୍ଦ୍ଦିଷ୍ଟ ଚିତ୍ରକଳ୍ପ ସୃଷ୍ଟି କରିଥାନ୍ତି । ଆମେରିକାରେ କ୍ରୀତଦାସ କହିଲେ ସ୍ୱାଭାବିକ ଭାବରେ ମନକୁ ଆସେ ହାରିଏଟ ଷ୍ଟୋ'ଙ୍କ 'ଟମକକାଙ୍କ କୁଟୀର' କିମ୍ୱା କୋରାପୁଟର ଆଦିବାସୀ ସମାଜକହିଲେ ଅନେକେ ବୁଝନ୍ତି ଗୋପୀନାଥ ମହାନ୍ତିଙ୍କ 'ଅମୃତର ସନ୍ତାନ' ବା 'ପରଜା' । ଲେଖକମାନଙ୍କ କଲମ ହିଁ ସର୍ବଶ୍ରେଷ୍ଠ ସେତୁ, ଦେଶ-ଦେଶ, ଅଞ୍ଚଳ-ଅଞ୍ଚଳ ଓ ଗୋଷ୍ଠୀ-ଗୋଷ୍ଠୀ ମଧ୍ୟରେ ।

ଶାନ୍ତନୁବାବୁ କରଞ୍ଜିଆ ସମ୍ପର୍କରେ ମୂଲ୍ୟବାନ ଗ୍ରନ୍ଥଟିଏ ଲେଖି କରଞ୍ଜିଆକୁ ଅନ୍ତର୍ଭୁକ୍ତ କରିଛନ୍ତି ସାହିତ୍ୟିକ ଓ ସାଂସ୍କୃତିକ ଓଡ଼ିଶାରେ । ଅଧିକାଂଶ ଓଡ଼ିଆଭାଷୀ

ଅଞ୍ଚଳ ରାଜନୀତିକ ଓଡ଼ିଶାର ଅନ୍ତର୍ଭୁକ୍ତ ହୋଇଛି, କିନ୍ତୁ ଲେଖକମାନେ ସେମାନଙ୍କ ସମ୍ପର୍କରେ ଲେଖାଲେଖି ନ କରିବା ଯାଏଁ ବହୁ ଅଞ୍ଚଳ ସାହିତ୍ୟିକ ଓ ସାଂସ୍କୃତିକ ଓଡ଼ିଶା ବାହାରେ ରହିଥିବ ।

## ଟମାଟୋ ଓ ମଝିଲୋକ

କରଞ୍ଜିଆରୁ ଭୁବନେଶ୍ୱର ଆସିବା ବାଟରେ ଆନନ୍ଦପୁରରେ ଅଟକିଲୁ । 'ଏଠାରେ ପନିପରିବା ଶସ୍ତା' - ଏଇ ଦାମିକା ସମ୍ବାଦ ମିଳିଲା ଅଭିଜ୍ଞ ଡ୍ରାଇଭରଠାରୁ ।

ଟମାଟୋ ଟଙ୍କାରେ ଦୁଇ କେଜି । ବେଶ୍ ବଡ଼, ଏଇମାତ୍ର ଗଛରୁ ତୋଳା ଲାଲ ଟହ ଟହ ଟମାଟୋ । କଅଁଳ ଛନ ଛନ ବାଇଗଣ ମଧ ଟଙ୍କାରେ ଦୁଇକେଜି । ବ୍ୟାଗ୍‌ମାନ ପୂର୍ଣ୍ଣକଲୁ ପନିପରିବାରେ ।

ଭୁବନେଶ୍ୱରରେ ଟମାଟୋ କେଜି ଏକଟଙ୍କା କୋଡିଏ ପଇସା । ଅର୍ଥାତ୍ ଆନନ୍ଦପୁରରୁ ଭୁବନେଶ୍ୱର ମଧ୍ୟରେ କେଜିଏ ଟମାଟୋର ଦାମ୍ ବଢ଼ିଯାଏ ସତୁରୀ ପଇସା । ଦାମ୍ ହୋଇଯାଏ ମୋଟାମୋଟି ଦୁଇଗୁଣ । ଆନନ୍ଦପୁରରେ ଟମାଟୋର ବିକ୍ରେତା ନିଜେ ଚାଷୀ । ପ୍ରାୟ ତିନିମାସ ମେହନତରେ ସେ ଫଳାଏ ଟମାଟୋ ଓ କେଜି ପାଇଁ ପାଏ ପଚାଶ ପଇସା । (ପାଇକାରୀ ବ୍ୟବସାୟୀଙ୍କଠାରୁ ହୁଏତ ପାଉଥିବ କେଜିପିଛା ଚାଳିଶି ବା ତରିଶି ପଇସା କିନ୍ତୁ ଆନନ୍ଦପୁରରୁ ଭୁବନେଶ୍ବରକୁ ଟମାଟୋ ଆଣେ ଯେଉଁ ବ୍ୟବସାୟୀ, ସେ ମଧପାଏ କେଜି ପିଛା ପଚାଶ ପଇସା । (ବସଭଡ଼ା ଓ ଅନ୍ୟାନ୍ୟ ଖର୍ଚ୍ଚ କେଜି ପିଛା କୋଡ଼ିଏ ପଇସା ଧରାଯାଉ ।)

ବର୍ତ୍ତମାନ ବୁଝିହୁଏ - ଟମାଟୋ ଉତ୍ପାଦନରେ ବାସ୍ତବରେ ଲାଭବାନ ହୁଏ ବ୍ୟବସାୟୀ, ଚାଷୀ ନୁହେଁ । ଚାଷୀଟିର ତିନିମାସର ମେହନତ ବ୍ୟବସାୟୀର ତିନି ଦିନର ମେହନତର ଦାମଠାରୁ ବି କମ୍ ହୁଏ ।

ଏହି ବ୍ୟବସାୟୀମାନଙ୍କ ଅନ୍ୟ ନାମ ମଝିଲୋକ ବା middle men । କେବଳ ଟମାଟୋ ନୁହେଁ - ସମସ୍ତ ଶସ୍ୟ, ଅନ୍ୟାନ୍ୟ ପରିବା ଓ ଖାଉଟି ଦ୍ରବ୍ୟରେ ଅଯଥା ଫାଇଦା ଉଠାଇବାରେ ଅଭ୍ୟସ୍ତ ଏହି ମଝିଲୋକମାନେ । ସେମାନଙ୍କ ଫାଇଦାର ପରିମାଣ ସଙ୍କୁଚିତ କରିବା କ'ଣ ମନୁଷ୍ୟର ସାଧ୍ୟାତୀତ ?

# ମୂଷାଖେର

ମୂଷାଖେର କରଞ୍ଜିଆ ନିକଟବର୍ତ୍ତୀ ଗୋଟିଏ ଗାଁଆ । କିଛିମାସ ତଳେ ସେ ଗାଁଆରେ ଘଟିଥିବା ନାରକୀୟ ନାଟକର ବୃତ୍ତାନ୍ତ ଶୁଣିଲି ଜଣେ ସହଯାତ୍ରୀ ବନ୍ଧୁଙ୍କଠାରୁ ।

ପିଲାଟି ରହୁଥିଲା ତା' ଭଉଣୀ -ଭିଣୋଇଙ୍କ ପାଖରେ । କୌଣସି ଠାକୁରାଣୀଙ୍କୁ ସନ୍ତୁଷ୍ଟ କରିବାପାଇଁ ବାବାଜୀ ଜଣେ ଖୋଜୁଥିଲେ ପିଲାଟିଏ ବଳିଦେବା ପାଇଁ । ଦରଦାମ ଛିଣ୍ଡାଇ ପିଲାଟିକୁ ସେ କିଣିନେଲେ ଭଉଣୀ - ଭିଣୋଇଙ୍କ ପାଖରୁ ।

ପିଲାଟିର ହତ୍ୟା ସମ୍ବାଦ ଅବଶ୍ୟ ଅଛପା ରହିଲା ନାହିଁ । ପୋଲିସ ଯଥାବିଧି ସେମାନଙ୍କ କର୍ତ୍ତବ୍ୟ କଲେ - ବାବାଜୀ ଓ ଭଉଣୀ-ଭିଣୋଇଙ୍କୁ ଗିରଫକରି ।

କରଞ୍ଜିଆରୁ ଭୁବନେଶ୍ୱର ଆସିବା ବାଟରେ ଦୁଇ ପାଖରେ ଧୂସର ଲ୍ୟାଣ୍ଡସ୍କେପର ମନୋଟନୀ ଭାଙ୍ଗି ଆଖିରେ ପଡ଼େ ଛୋଟ ଗାଁଆ, ଗୁଳ୍ମ ଓ ଗଛସବୁ । କେଉଁଠି ପାଣିଧାରଟିଏ ବା ଗାଈ ଓ ମଇଁଷିପଲ । ସମଗ୍ର ପରିବେଶ ମନେହୁଏ ନୀରବ, ସହଜ ଓ ନିରୀହ ।

କିନ୍ତୁ ଅପାତତଃ ସହଜ ଓ ନିରୀହ ଏଇ ରୂପଟି ଭିତରେ ଏତେ ହିଂସ୍ରତା ଲୁଚି ଥାଇପାରେ !

ପ୍ରାଚୀନ ସଭ୍ୟତା, ସଂସ୍କୃତି ଓ ଧର୍ମର ଦେଶ ଭାରତ । ଦର୍ଶନ ଓ ମାନବିକ ମୂଲ୍ୟବୋଧରେ ଭାରତର ପ୍ରଜ୍ଞା ଓ ଉଦାରତାର ପଟାନ୍ତର ନାହିଁ । ଅଥଚ ସେହି ଭାରତରେ ମୁଁ ଏଇ ଲେଖାଟି ଲେଖୁଥିବା ସମୟରେ ହୁଏତ କେଉଁଠି ନିବିଡ଼ ଜଙ୍ଗଲର ଅନ୍ଧାରରେ ମଣିଷ ଶିଶୁଟିକୁ ଖଣ୍ଡାରେ କଟାଯାଇ ତା' ରକ୍ତରେ ଠାକୁରାଣୀଙ୍କ ଉପଚାର ହେଉଥିବ; ଆଠବର୍ଷର ଝିଅଟି ଉପରେ ଚାଲିଥିବ ଗଣଧର୍ଷଣ କିମ୍ବା ନୂଆ ବାହାହୋଇ ଆସିଥିବା ବୋହୂଟିକୁ ସ୍ୱାମୀ-ଶାଶୁ-ଶ୍ୱଶୁରଙ୍କ ମିଳିତ କ୍ରୋଧ ନିଆଁରେ ପୋଡ଼ି ପାଉଁଶ କରୁଥିବ !

ପ୍ରାଚୀନ, ସଭ୍ୟଭାରତ ଓ ହିଂସ୍ର, ବର୍ବର ଭାରତ - ଆମେ କେଉଁ ଭାରତରେ ବାସକରୁ ? ❐

(୧୯୮୬)

# ଲାଲୁବାବୁଙ୍କ କୋଠି

'ଏଠି ଆପଣ ଯେତେ ଗଛ ଦେଖୁଛନ୍ତି, ସବୁଗଛ ତଳେ ପୋତା ହୋଇଛନ୍ତି ଦୁଇ ବା ତିନୋଟି ଭାଲୁ ।' କରଞ୍ଜିଆ କଲେଜର ଜଣେ ଅଧ୍ୟାପକ ବନ୍ଧୁ ଲାଲୁବାବୁଙ୍କ କୋଠିର ହତା ଭିତରେ ଥିବା ଗଛମାନଙ୍କୁ ନିର୍ଦ୍ଦେଶ କରି କହୁଥିଲେ । ହତାର ଆୟତନ ବାର ଏକର । ହତା ଭିତରେ ଗଛର ସଂଖ୍ୟା ଗଣିବା କଠିନ । ସେ ପୁଣି କହୁଥିଲେ, ଖାଲି ଲିଚୁ ବିକ୍ରୀ କରି ବୀରେନ୍ଦ୍ରବାବୁ ବର୍ଷକୁ ଦୁଇ ତିନି ହଜାର ଟଙ୍କା ପାଆନ୍ତି ।

ବୀରେନ୍ ବାବୁ ଅର୍ଥାତ୍ ଲାଲା ବୀରେନ୍ଦ୍ର ନାଥ ଶାହାଦେଓ । ଆମକୁ ସେଦିନ ସନ୍ଧ୍ୟାରେ ଡିନର୍ ପାଇଁ ନିମନ୍ତ୍ରଣ କରିଥିଲେ । ଆଗରୁ ମୁଁ ଶୁଣିଥିଲି, ବୀରେନ୍ ବାବୁଙ୍କ ବାପା ଥିଲେ ଜଣେ ପ୍ରସିଦ୍ଧ ଶିକାରୀ । ତାଙ୍କ ଘରେ ତଥାପି ବହୁ ପଶୁଙ୍କର ଶିଂଘ, ଦାନ୍ତ, ଚମଡ଼ା ସୁରକ୍ଷିତ ଅଛି । ମୁଁ ଆଗ୍ରହୀ ହୋଇଥିଲି ।

ବୀରେନ୍‌ବାବୁଙ୍କ ବାପା ଲାଲା ଶୁକଦେବ ଶାହାଦେଓ ବା ଲାଲୁବାବୁଙ୍କ ନିର୍ମିତ ଗୃହ ଓ ଉଦ୍ୟାନଟି ଦେଖିଲେ ହିଁ ବୁଝିହୁଏ - ଜଣେ ଶିକାରୀ କିଭଳି ପରିବେଶରେ ରହିବା ଉଚିତ । ପାରମ୍ପରିକ ରୀତିରେ ଗଠିତ ଟାଇଲ୍‌ଘର, କାଠ ଛାତ - କେଉଁ ନିଭୃତ ଜଙ୍ଗଲ ଭିତରର ପୁରୁଣା ଡାକ ବଙ୍ଗଳା ଭଳି ଦିଶେ । ଘରର କାନ୍ଥରେ ବାଇସନ୍ ମୁଣ୍ଡ, ଅରଣା ମଇଁଷି ମୁଣ୍ଡ, ପ୍ରକାଣ୍ଡ ଦନ୍ତା ହାତୀର ଜଳଦାନ୍ତ । ଆଦିମ ଜଙ୍ଗଲ ଯେମିତି ମୁଖ ବ୍ୟାଦାନ କରି ଅନାଇ ରହିଚି । ବୀରେନ୍‌ବାବୁଙ୍କ ଆତିଥ୍ୟର ପ୍ରଥମ ସମ୍ଭାଷଣଥିଲା, ତାଙ୍କ ବାପାଙ୍କ ଶିକାର କୁଶଳତା ସମ୍ପର୍କରେ– 'ବାପା ଏସବୁ ଜନ୍ତୁ ନିଜେ ମାରିଥିଲେ ।' ସେ କହିଲେ, ଘର ଭିତରେ ପ୍ରକାଣ୍ଡ ମହାବଳ ବାଘ ଚମଡ଼ା, ବହୁ ଶିଂଗ ଓ ମୁଣ୍ଡ । ଚମଡ଼ାସବୁ ମଳିନ ପଡ଼ିଆସିଲାଣି, ସେଥିରୁ ଲୁମ ଝଡ଼ିଆସିଲାଣି ।

ବୀରେନବାବୁ ଦୁଇଟି ଆଲ୍‌ବମ୍ ମୋ ହାତକୁ ବଢ଼ାଇଦେଲେ । ଆଲବମ୍‌ରେ ପୃଷ୍ଠାମାନଙ୍କରେ ଲାଲୁବାବୁ ଓ ତାଙ୍କ ଶିକାରର ଅସଂଖ୍ୟ ଫଟୋ । କାନ୍ଧରେ ବନ୍ଧୁକ ପକାଇ ଠିଆହୋଇଛନ୍ତି ସନ୍ତୁଷ୍ଟ ଲାଲୁବାବୁ ଓ ତାଙ୍କ ପାଦତଳେ ଜଙ୍ଗଲର ଶୁଖିଲା ପତ୍ର ଉପରେ ଗଡୁଚି ମହାବଳ, ହେଟା କିମ୍ୱା କଲରା ପତରିଆ ବାଘ । ବାଘଟି ଏଇମାତ୍ର ଶିକାର ହୋଇଛି; ତା' ଦେହରୁ ରକ୍ତ ନିଗିଡ଼ିଆସୁଛି । ଆଦିମ ଜଙ୍ଗଲର

ମଣିଷର ପାଦତଳେ କି କରୁଣ ଆତ୍ମସମର୍ପଣ ! 'ବାପା ମୋଟରେ ତିନିଶହ ବାଘ ମାରିଥିଲେ ।' ବୀରେନ୍‌ବାବୁଙ୍କ ମନ୍ତବ୍ୟ ।

ତିନି ଶହ ବାଘ ! ଯେଉଁ ସମୟରେ ଲାଲୁବାବୁ କାନ୍ଧରେ ବନ୍ଧୁକ ପକାଇ ଓଡ଼ିଶାର ଜଙ୍ଗଲ ଜଙ୍ଗଲ ଘୂରି ବୁଲୁଥିଲେ, ସେତେବେଳେ ହୁଏତ ପ୍ରତି ବୁଦା ଉହାଡ଼ରେ ବାଘଟିଏ ଶିକାରୀର ଗତି ନିରୀକ୍ଷଣ କରୁଥିଲା ଓ ପ୍ରତି ଜଙ୍ଗଲୀ ଝରଣା କୂଳରେ ପଡ଼ିଥିଲା ବାଘର ପାଦଚିହ୍ନ । ଆଜି ଓଡ଼ିଶାର ସବୁ ଜଙ୍ଗଲରେ ମୋଟରେ ଦେଢ଼ଶହ ବାଘ ଅଛନ୍ତି ବୋଲି କୁହାଯାଉଚି । ଆଉ ସେ ବାଘମାନେ ନାହାନ୍ତି, ନିବିଡ଼ ଜଙ୍ଗଲମାନ ସେମାନଙ୍କ ଜଙ୍ଗଲତ୍ୱ ହରାଇବସିଲେଣି, ଲାଲୁବାବୁଙ୍କ ଭଳି ଶିକାରୀ ବି ଖୋଜିଲେ ମିଳିବେ ନାହିଁ ।

ଲାଲୁବାବୁଙ୍କ ଘର ରାଞ୍ଚି ଜିଲ୍ଲାରେ । ସେ ଥିଲେ ରାଜପୁତ୍ ଓ ତାଙ୍କ ପୁତ୍ରଙ୍କ କହିବା ଅନୁସାରେ ତାଙ୍କ ପୂର୍ବ ପୁରୁଷମାନେଥିଲେ ଏକଦା 'ବଟ୍‌କା ଗଡ଼' ରାଜ୍ୟର ରାଜା । ସିପାହୀ ବିଦ୍ରୋହବେଳେ ସେମାନେ ରାଜ୍ୟ ହରାଇଥିଲେ । ଓଡ଼ିଶାର ରାଜ ପରିବାରମାନଙ୍କ ସହିତ ସେମାନଙ୍କ ବୈବାହିକ ସମ୍ପର୍କଥିଲା । କାନ୍ଥରେ ଝୁଲୁଥିବା ଗୋଟିଏ ଫଟୋ ପ୍ରତି ଆଙ୍ଗୁଳି ନିର୍ଦ୍ଦେଶ କରି ବୀରେନ୍‌ବାବୁ କହିଲେ, 'ଏ ହେଉଛନ୍ତି ବଣେଇର ରାଜା ଧରଣୀଧର ଦେବ । ତାଙ୍କ ଭଉଣୀଙ୍କୁ ମୋ ବାପା ବାହା ହୋଇଥିଲେ ।'

ଶାସନ କରିବା ପାଇଁ ଲାଲୁବାବୁଙ୍କ ପାଇଁ ଅବଶ୍ୟ କୌଣସି ରାଜ୍ୟ ନଥିଲା । ସେ ଓଡ଼ିଶା ଆସି ଜଙ୍ଗଲ ବିଭାଗରେ ସାମାନ୍ୟ ଫରେଷ୍ଟ ଅଫିସରେ କାର୍ଯ୍ୟକଲେ । ଆଉ କିନ୍ତୁ ସେ ବିହାରକୁ ଫେରିଲେ ନାହିଁ । କରଞ୍ଜିଆ ସହର ଉପକଣ୍ଠରେ ବାର ଏକର ଜଙ୍ଗଲିଆ ଜମି କିଣି ସେ ନିର୍ମାଣକଲେ ତାଙ୍କ କୋଠି ଓ ବଗିଚା ।

'ସେ କାହିଁକି ଓଡ଼ିଶାରେ ରହିବାକୁ ସ୍ଥିରକଲେ ?' ମୁଁ ବୀରେନ୍‌ବାବୁଙ୍କୁ ପଚାରିଲି ।

'ବାଘମାନଙ୍କ ପାଇଁ ।' ବୀରେନ୍‌ବାବୁ ଆପାତତଃ ଥଟ୍ଟାରେ କହୁଥିଲେ । କିନ୍ତୁ ହୁଏତ ଓଡ଼ିଶାର ବାଘ ଓ ଜଙ୍ଗଲହିଁ ଲାଲୁବାବୁଙ୍କ ରାଜପୁତ ହୃଦୟକୁ ଆକୃଷ୍ଟ କରିଥିଲା । ସେ ଆଉ ବିହାର ଫେରିଲେନାହିଁ । 'ସେତେବେଳେ ଏ ଅଞ୍ଚଳ ଥିଲା ଖାଲି ଜଙ୍ଗଲ । ଏଠାକୁ ଆସିବାକୁ ଲୋକେ ଡରୁଥିଲେ । ବାପା ମାଣ ଚାଳିଶ ଟଙ୍କାରେ

ଏଇ ଜମିସବୁ କିଣିଥିଲେ । ମୋଟ ବାର ଏକର ଜମି ପାଇଁ ତାଙ୍କୁ ଖର୍ଚ୍ଚ କରିବାକୁ ପଡ଼ିଥିଲା ସାତ ଶହ କୋଡ଼ିଏ ଟଙ୍କା ।' ବୀରେନ୍‌ବାବୁ କହୁଥିଲେ ।

'ଆପଣଙ୍କୁ ଏତେବଡ଼ ହତା ଭିତରେ ପରିବାର ଧରି ରହିବାକୁ ଭୟ ଲାଗେନାହିଁ ?' ପଚାରିଲି ।

ବୀରନ୍‌ବାବୁ କହିଲେ, 'କାଇଁ କେବେତ କିଛି ଅସୁବିଧା ହୋଇନାହିଁ । ତେବେ ମୋ ପାଖରେ ବନ୍ଧୁକ ଅଛି ।' 'ବୀରନ୍‌ବାବୁ ବି ଜଣେ ଖୁବ୍ ଭଲ ଶିକାରୀ ।' ଅଧ୍ୟାପକ-ବନ୍ଧୁ ମନ୍ତବ୍ୟ ଦେଲେ । X X X

ଲାଲୁବାବୁଙ୍କ କୋଠିର ହତାରେ ଗୋଟିଏ ଆମ୍ବ ଗଛ ତଳେ ଡିନର୍ ପାଇଁ ରନ୍ଧା କାର୍ଯ୍ୟ ଚାଲିଥିଲା । କଟା ପରିବା, ବଟା ମସଲା ଓ ସିଝା ମାଂସର ବାସ୍ନା ସେଠାରେ ପିକ୍‌ନିକର ମଧୁର ପରିବେଶ ସୃଷ୍ଟି କରିଥିଲା । ନିମନ୍ତ୍ରିତ ବନ୍ଧୁମାନଙ୍କ ମଧ୍ୟରେ ଅଧିକାଂଶ ଥିଲେ କରଞ୍ଜିଆ କଲେଜର ଅଧ୍ୟାପକ ଓ ଛାତ୍ର । ପେଟ୍ରୋମ୍ୟାକ୍ସ ଲାଇଟ୍ ଚାରିପାଖରେ ବସି ସେମାନେ ଗପ ଜମାଇଥିଲେ । ସେମାନଙ୍କ ମଧ୍ୟରୁ ଅନେକେ ଲାଲୁବାବୁଙ୍କୁ ଭଲ ଭାବରେ ଜାଣିଥିଲେ; ଏଇ ହତାରେ ଏମିତି ପରିବେଶରେ ତା'ଙ୍କଠାରୁ ରୋମାଞ୍ଚକର ଶିକାର ଗପମାନ ଶୁଣିଥିଲେ । ତେଣୁ ସେଦିନ ଆଲୋଚନାର ମୁଖ୍ୟ ନାୟକ ଲାଲୁବାବୁ ହିଁ ହେବା ସ୍ୱାଭାବିକ ଥିଲା ।

ରାତି ଆଠଟା ଅତିକ୍ରମ କରି ସାରିଥିଲା । ଲାଲୁବାବୁଙ୍କ କୋଠି ଓ ବିସ୍ତୃତ ହତା ଛାଇ ଆଲୁଅ ଓ ମଣିଷ କଣ୍ଠସ୍ୱରରେ ହୋଇ ଉଠିଥିଲା ଜୀବନ୍ତ ଓ ରହସ୍ୟମୟ ।

'ସେ କେବେ ମଞ୍ଚ ଉପରୁ ଜନ୍ତୁ ଶିକାର କରି ନଥିଲେ । ଜନ୍ତୁର ପିଛାକରି ଜନ୍ତୁ ମାରିବାକୁ ସେ ପସନ୍ଦ କରୁଥିଲେ । ଥରେ ସେ ଆସୁଥାନ୍ତି ଖିଚିଂରୁ କରଞ୍ଜିଆ ସାଇକେଲରେ । ସେତେବେଳେ ରାସ୍ତା ସାରା ଘନ ଜଙ୍ଗଲ । ତେବେ ତାଙ୍କ କାନ୍ଧରେ ପଡ଼ିଥାଏ ବନ୍ଧୁକଟା । ବାଟରେ ତିନିଟା ଭାଲୁ ମାରିଦେଲେ । ସେଗୁଡ଼ାକୁ ସାଇକେଲରେ ଓହଳାଇ ସଞ୍ଜକୁ ଘରେ ପହଞ୍ଚିଲେ ।'

'କେତେ ବାଘ ଚମଡ଼ା, ଦାନ୍ତ, ନଖ ସେ ବାଣ୍ଟି ନଥିବେ ! ତେବେ ଭାଲୁଗୁଡ଼ାକ କିଛି କାମରେ ଆସନ୍ତି ନାହିଁ । ତେଣୁ ଗଛ ମୂଳେ ସେ ପୋତି ଦେଉଥିଲେ ଦୁଇ ତିନିଟା ଭାଲୁ । ଅନ୍ତତଃ ଭଲ ଖତ ହୋଇଯିବେ ।

'ଏଇ ଶିକାରପାଇଁ ନୀଳଗିରି ରାଜା ଚବିଶ ଘଣ୍ଟା ଭିତରେ ତାଙ୍କୁ ରାଜ୍ୟ ଛାଡ଼ ଆଦେଶ ଦେଇଥିଲେ । କଥା କ'ଣ କି ନୀଳଗିରିର ରାଜା ନିଜେ ବାଘ ଶିକାର କରିବେ ବୋଲି ଠିକ୍ ହୋଇଥିଲା । ଲାଲୁବାବୁ ଶିକାରର ସବୁ ଆୟୋଜନ କଲେ । କେଉଁଠି ବାଘ ମିଳିବେ, କେଉଁଠି ମଞ୍ଚା ତିଆରି ହେବ, କେଉଁଠି bait ରଖାଯିବ, ଇତ୍ୟାଦି । କିନ୍ତୁ ରାଜା ଠିକଣାବେଳରେ ବାଘଟିକୁ ମାରି ପାରିଲେନି । ରାଜା କିନ୍ତୁ ଭୀଷଣ ରାଗିଗଲେ । ସେ ନିଜେ ବାଘଟିକୁ ମାରିଥାନ୍ତେ, ଲାଲୁବାବୁ ମାରିଲେ କାହିଁକି ? ତେଣୁ ଚବିଶ ଘଣ୍ଟା ଭିତରେ ତାଙ୍କୁ ରାଜ୍ୟ ଛାଡ଼ିବାକୁ ଆଦେଶ ହେଲା ।

'ଶେଷ ବୟସରେ ଲାଲୁବାବୁ ନିଜେ ବେଶୀ ଶିକାରକୁ ଯାଉ ନ ଥିଲେ । କିନ୍ତୁ ଜଙ୍ଗଲ, ଜନ୍ତୁ ଓ ଗଛପତ୍ର କଥା ସବୁ ଟିକିନିଖି କହି ଦେଉଥିଲେ । ଥରେ ଆମେ କେତେ ଜଣ ଭାଲୁ ଶିକାର କରିବା ପାଇଁ ବାହାରିଲୁ । ଲାଲୁବାବୁଙ୍କ ପାଖକୁ ଆସିଲୁ । ସେ କହିଲେ, 'ଅମୁକ ଜାଗାକୁ ଯାଅ । ସେଠି ମସ୍ତଗୋଟାଏ ଗଛ ଅଛି, ସେଥିରେ ତିନିଟା ଖୋପ । ଉପର ଖୋପରୁ ଭାଲୁଟା ବାହାରି ତଳକୁ ଓହ୍ଲାଇବ । ତମେତ କିନ୍ତୁ ଭାଲୁଟାକୁ ମାରି ପାରିବ ନାହିଁ । ଖଣ୍ଡିଆ କରି ଛାଡ଼ିଦେବ ।' ସତକୁ ସତ ଲାଲୁବାବୁ ଯାହା କହିଥିଲେ, ଠିକ୍ ସେଇୟା ହେଲା । ଭାଲୁଟା ଉପର ଖୋପରୁ ବାହାରିଲା । ଆମେ ଗୁଳି ମାଇଲୁ । ଭାଲୁଟା ପିଠିରେ ଗୁଳି ବାଜିଲା । ସେ ମଲା ନାହିଁ, ଗର୍ଜନ କରି କରି ଗୋଟାଏ ଗୁମ୍ଫା ଭିତରେ ପଶିଗଲା । ତା'ପରେ ଆମେ ଯାଉ କୁଆଡ଼େ ? କୁଆଡ଼େ ଥିଲେ ତିରିଶି କି ଚାଳିଶିଟା ଭାଲୁ, ସେଠାକୁ ଆସି ପଇଁତରା ମାରିଲେ । ସକାଳ ଯାଏଁ ଆମେ ସେମିତି ଗଛ ଉପରେ ଡରରେ ବସିଛୁ ।

'ଲାଲୁ ବାବୁଙ୍କୁ ଆସି ଏକଥା କହିଲୁ । ସେ ବନ୍ଧୁକ ନେଇ ଆମ ସାଙ୍ଗେ ଆସିଲେ । କିନ୍ତୁ ଆଶ୍ଚର୍ଯ୍ୟ କଥା ! ଗୋଟିଏ ବି ଭାଲୁର ଦେଖାନାହିଁ । ଲାଲୁବାବୁ ଜଣେ ଜଙ୍ଗଲି ଲୋକକୁ ନେଇ ସେଇ ଭାଲୁ ପଶିଥିବା ଗୁମ୍ଫା ପାଖକୁ ଗଲେ । ଜାଗାଟା ଭୟଙ୍କର ଗନ୍ଧ ହେଉଥାଏ । ସେ ବନ୍ଧୁକ ଧରି ଗୁମ୍ଫାରେ ବସି ରହିଲେ । ଜଙ୍ଗଲି ଲୋକଟାକୁ କହିଲେ, ଗୁମ୍ଫା ଭିତରେ ଭାଲୁଟା ମରିଯାଇଚି । ତାକୁ ବାହାରକୁ ଘୋଷାରି ଆଣ । ଆମକୁ କହିଲେ, ଭାଲୁମାନେ ସିନା ଦେଖିବାକୁ ଅପରଛନିଆ କିନ୍ତୁ ସେମାନେ ଖୁବ୍ ପରିଚ୍ଛନ୍ନ ରହନ୍ତି । ଟିକିଏ ଗନ୍ଧହେଲେ ସେମାନେ ରହିପାରନ୍ତି ନାହିଁ । କିଛିଦିନ ପରେ ଭାଲୁମାନେ ପୁଣି ସେଇ ସ୍ଥାନକୁ ଆସିବା ଦେଖାଗଲା ।' x x x

ଓଡ଼ିଶା ପାହାଡ଼, ପର୍ବତ, ବଣ ଜଙ୍ଗଲର ଦେଶ । କିନ୍ତୁ କୌଣସି କାରଣରୁ ଓଡ଼ିଶାର କବି, ଲେଖକ, କଳାକାର ବା ସାଧାରଣ ଲୋକେ ବଣ ଜଙ୍ଗଲ ବା ପଶୁ–ପକ୍ଷୀଙ୍କ ସମ୍ପର୍କରେ ବିଶେଷ ଆଗ୍ରହ ପ୍ରକାଶ କରନ୍ତି ନାହିଁ କିମ୍ବା ସମ୍ବାଦ ରଖନ୍ତି ନାହିଁ । ବିଗତ ଅର୍ଦ୍ଧ ଶତାବ୍ଦୀ ମଧ୍ୟରେ ଓଡ଼ିଶାର ବିପୁଳ ଅରଣ୍ୟ ସମ୍ପଦ ଓ ସୌନ୍ଦର୍ଯ୍ୟ ଯେ ବ୍ୟବସାୟୀ ଓ ଅବିବେକୀ ମଣିଷମାନଙ୍କ ଦ୍ୱାରା ଧର୍ଷିତ ହୋଇ ଆସିଛି, ସେ ସମ୍ପର୍କରେ ପ୍ରାୟ କେହି ସଚେତନ ନୁହନ୍ତି ।

ଯାଜପୁର ରୋଡ୍‌ରୁ କରଞ୍ଜିଆ ଯିବା ବାଟରେ ପଡ଼େ ମାଇଲ୍ ମାଇଲ୍ ଶାଳ ଜଙ୍ଗଲ । ଶେଷ ଫେବୃୟାରୀର ଉତ୍ତପ୍ତ ମଧ୍ୟାହ୍ନରେ ସେଇ ଜଙ୍ଗଲସବୁ ଅତିକ୍ରମ କଲାବେଳେ ଅସଂଖ୍ୟ ଶୁଷ୍କ ଶାଳପତ୍ର ରାସ୍ତା ଅବରୋଧ କରୁଥିଲେ । କେଉଁଠୁ ଭାସି ଆସୁଥିଲା ଆମ୍ର ବଉଳର ବାସ୍ନା । ଜଙ୍ଗଲସବୁ ସୂର୍ଯ୍ୟ ଉତାପରେ ଜଳି ଯାଉଥିଲେ; ଦିଶୁଥିଲେ ପତ୍ରଶୂନ୍ୟ ଓ ମ୍ରିୟମାଣ । ପକ୍ଷୀମାନଙ୍କ କାକଳୀ ଶୁଭୁ ନଥିଲା । ମଝିରେ ମଝିରେ ରଙ୍ଗୀନ ଶାଢ଼ୀପିନ୍ଧା ଦଳ ଦଳ ଆଦିବାସୀ ଝିଅ ଖାଲି ପାଦରେ ଚାଲିଥିଲେ । ମୁଣ୍ଡରେ ସେମାନଙ୍କର ଜଙ୍ଗଲରୁ ସଂଗୃହୀତ ଜାଳେଣି କାଠ । କାନ୍ଧରେ ଭାର ଓହଳାଇ ନିର୍ଦ୍ଦିଷ୍ଟ ଛନ୍ଦରେ ହାତ ହଲାଇ ଚାଲିଥିଲେ ଘର୍ମ-ଉଜ୍ଜ୍ୱଳ ଆଦିବାସୀ ଯୁବକ ବା ପ୍ରୌଢ଼ମାନେ ।

ସେଦିନ ସନ୍ଧ୍ୟାରେ କରଞ୍ଜିଆରେ ବନ୍ଧୁମାନଙ୍କ ଆଲୋଚନାର ମୁଖ୍ୟ ନାୟକ ପ୍ରିୟ ଲାଲୁବାବୁ କେବଳ ଜଣେ ଦକ୍ଷ ଶିକାରୀ ନଥିଲେ, ସେ ମଧ୍ୟ ଥିଲେ ଓଡ଼ିଶାର ଅରଣ୍ୟ ସୌନ୍ଦର୍ଯ୍ୟର ଜଣେ ଦୁରନ୍ତ ପ୍ରେମିକ । ବୀରେନ୍‌ବାବୁ ମୋତେ ତାଙ୍କ ବାପାଙ୍କର ଦୁଇଟି ଡାଏରୀ ଦେଖାଇଲେ । ପରିଷ୍କାର ଇଂରାଜୀ ଅକ୍ଷରରେ ଲାଲୁବାବୁ ତାଙ୍କ ଶିକାର ଅନୁଭୂତି ବର୍ଣ୍ଣନା କରିଛନ୍ତି । ଗୋଟିଏ ବାଘକୁ କିଭଳି ଦିନଦିନ ଧରି ସେ ପିଛା କରିଥିଲେ, ତାର ସଂକ୍ଷିପ୍ତ ବର୍ଣ୍ଣନା ପଢ଼ିଲି । ବର୍ଣ୍ଣନାଟି ଅସମ୍ପୂର୍ଣ୍ଣ, ଗୋଟିଏ ବାକ୍ୟ ଅଧାରେ ରହିଯାଇଛି । ଅନ୍ୟାନ୍ୟ ପୃଷ୍ଠାଗୁଡ଼ିକ ପଢ଼ିବା ପାଇଁ ଇଚ୍ଛା ଥିଲା କିନ୍ତୁ ସମୟ ନଥିଲା । ଆଉ ଗୋଟିଏ ସ୍ଥାନରେ ସେ ଲେଖିଛନ୍ତି Wilderness is the garden of God(ଅରଣ୍ୟ ହିଁ ଈଶ୍ୱରଙ୍କ ଉଦ୍ୟାନ) ।

Indian Foresterରେ ଲାଲୁବାବୁଙ୍କର ଦୁଇଟି ଶିକାର କାହାଣୀ ପ୍ରକାଶିତ ହୋଇଥିଲା । ବୀରେନବାବୁ ପତ୍ରିକା ଦୁଇଟି ସାଇତି ରଖିଛନ୍ତି । 'ଅମୃତ ବଜାର'

ପତ୍ରିକାରେ ଲାଲୁବାବୁଙ୍କ ମଣିଷଖିଆ ବାଘ ଶିକାର ସମ୍ପର୍କରେ ପ୍ରକାଶିତ ସମ୍ବାଦଟି ମଧ୍ୟ ମୁଁ ଦେଖିଲି ।

ଓଡ଼ିଶାର ବଣ ଜଙ୍ଗଲ ପଶୁପକ୍ଷୀଙ୍କୁ ଯେଉଁମାନେ ଅନ୍ତରଙ୍ଗ ଭାବରେ ଭଲ ପାଉଛନ୍ତି, ଲାଲୁବାବୁ ନିଶ୍ଚିତ ଭାବରେ ସେମାନଙ୍କ ମଧ୍ୟରେ ଜଣେ । ତାଙ୍କର ଲେଖାଗୁଡ଼ିକ ପରିମାଣ ଦୃଷ୍ଟିରୁ ନଗଣ୍ୟ ହେଲେହେଁ ତାହାର ଏକ ସ୍ୱତନ୍ତ୍ର ମୂଲ୍ୟ ଅଛି । ବୀରେନ୍‌ବାବୁ ବାପାଙ୍କର ଲେଖାଗୁଡ଼ିକୁ ସଂଗ୍ରହ କରି ପୁସ୍ତକ ଆକାରରେ ପ୍ରକାଶ କରିବାକୁ ଯେ ଉଦ୍ୟମ କରୁଛନ୍ତି, ଏହା ଯଥାର୍ଥରେ ଏକ ସୁସମ୍ବାଦ ।❐

(୧୯୮୨)

# ଭୂତମାନେ କଅଣ କରନ୍ତି

ଓଡ଼ିଶାର କୌଣସି ଗୋଟିଏ କ୍ଷୁଦ୍ର ସହରରୁ ଆମେ ଆସୁଥାଉ ଭୁବନେଶ୍ୱର ଅଭିମୁଖେ । କାର୍‌ରେ ମୁଁ, ମୋର ଜଣେ ସହକର୍ମୀ ଅଧ୍ୟାପକ, କୌଣସି ପ୍ରାଇଭେଟ୍ କଲେଜର ଅଧ୍ୟକ୍ଷ ଓ ସର୍ବୋପରି, ଅଭିଜ୍ଞ, ଟୋପିପରିହିତ ଡ୍ରାଇଭର । ଗାଡ଼ି ଚାଲିଥାଏ ଦ୍ରୁତ ଗତିରେ । ରାସ୍ତା ନିର୍ଜନ । କିଛି କିଛି ଦୂରତାରେ ମଫସଲି ବଜାର-ସେମାନଙ୍କ ଆଲୋକିତ କୋଳାହଳ ଓ ମଳିନ ଖପରୁଲି ଘରସବୁ । ସମୟ ରାତି ଏଗାରଟା ।

ଅଧ୍ୟକ୍ଷ କହିଲେ, 'ସମସ୍ତେ ଚୁପ୍‌ଚାପ୍ ବସିଲେ କାହିଁକି ? କିଛି କହନ୍ତୁ ।'

ମୋର ସହକର୍ମୀ କ୍ଷୀଣ ସ୍ୱରରେ ଉତ୍ତର ଦେଲେ, ମୁଁ ଆଜି ଭୀଷଣ ଟାୟାର୍ଡ୍ । ରାତି ପାଞ୍ଚଟାରୁ ଉଠିଛି ।' ସେ ତାଙ୍କ ଉକ୍ତିର ସତ୍ୟତା ପ୍ରମାଣ କରିବାକୁ ଅବିଳମ୍ବେ ଆଖିବୁଜି ଢୁଳାଇବାକୁ ଲାଗିଲେ ।

ଅଧ୍ୟକ୍ଷ ମୋତେ ଚାହିଁଲେ । ମୁଁ କହିଲି, 'ମୁଁ ଆଜ୍ଞା ଢୁଳାଏ ନାହିଁ । ଟ୍ରେନ ବା କାର୍‌ରେ ଗଲାବେଳେ ମୋତେ କେବେ ନିଦ ଲାଗେ ନାହିଁ ।'

ସେ ଆଶ୍ୱସ୍ତ ହେଲେ । ବାହାରକୁ ଆଙ୍ଗୁଠି ଦେଖାଇ କହିଲେ, 'ହେଇ ଠିକ୍ ଏଇଠି.... ଏକ ବରଗଛ ତଳେ । ଗଲାବର୍ଷ କଥା ।'

ମୁଁ ଉତ୍ସାହରେ ଅଧ୍ୟକ୍ଷଙ୍କ ମୁହଁକୁ ଚାହିଲି । କାର୍ ଭିତରର ଅନ୍ଧାରରେ ତାଙ୍କ ମୁହଁ ହଠାତ୍ ରହସ୍ୟମୟ ହୋଇ ଉଠିଥିଲା । ସେ କହୁଥିଲେ, 'ଅନେକ ସମୟରେ ବେଶୀ ରାତିରେ ମୁଁ କଟକ ଫେରେ । ଥରେ ନୁହେଁ ଦି'ଥର ନୁହେଁ, ଚାରି ପାଞ୍ଚ ଥର ଦେଖିଲି—କଳାବୁର୍ଖାପିନ୍ଧା ସ୍ତ୍ରୀ ଲୋକ ଜଣେ ସେଇ ଗୋଟିଏ ଜାଗାରେ ଠିଆ ହୋଇ କାର୍‌ରେ ଯିବାପାଇଁ ହାତ ଦେଖାଉଛି ।'

'ଆପଣ ଗାଡ଼ି ଅଟକାଇଲେ ?' ମୁଁ ପଚାରିଲି ।

ସେ ହସି ହସି କହିଲେ, 'କିଏ ଲୋକ ନଜାଣି କେମିତି ଗାଡ଼ି ଅଟକାଇ-ଥାନ୍ତି ? ମୁଁ ଏମିତି ଲୋକଟିଏ ଦେଖିବା ପରେ ପରେ ଏ ଅଞ୍ଚଳରେ ଭୟଙ୍କର ଡକାୟତି ହୋଇଥିଲା । ଜଣେ ଚାଷୀନେତା ସେଇ ଡକାୟତିରେ ଧରା ପଡ଼ିଥିଲେ ।

କିଛି ସମୟ ନୀରବତା । ଦୁଇ ପାଖରେ ଗତିଶୀଳ ଧାନବିଲ, ଗଛ ଓ କଦବା କେମିତି କେତେଜଣ ଗାଉଁଲି ମଣିଷ । କେଉଁଠି ଜଣେ ବୁଢ଼ା କାର୍‌କୁ ଦେଖି ହାତ ଦେଖାଇଲା । ହୁଏତ ତାର ଆଉରି ଆଗକୁ ଯିବାର ଅଛି, ତେଣୁ ସେ ଆମର ସାହାଯ୍ୟ ଚାହେଁ, କିମ୍ବା... ... ! ମୁଁ ଓ ଅଧ୍ୟକ୍ଷ ସେ ବୁଢ଼ା ବିଷୟ ଆଲୋଚନା କଲୁନାହିଁ ।

'ଆପଣ ଭୂତରେ ବିଶ୍ୱାସ କରନ୍ତି ?' ମୁଁ ପଚାରିଲି । ହଠାତ୍ ଏଇ ଗୁରୁତର ପ୍ରଶ୍ନଟି କାହିଁକି ମୋ ସମ୍ମୁଖରେ ଠିଆ ହେଲା, କହିବା କଠିନ । ତେବେ ସେଇ ବୁର୍ଖାପିନ୍ଧା ସ୍ତ୍ରୀ ଲୋକ ଓ ରାସ୍ତା କଡ଼ରେ କାର୍ ଦେଖି ହାତ ଦେଖାଉଥିବା ବୁଢ଼ା ହୁଏତ ମୋତେ ଭୂତ ମନେ ପକାଇ ଦେଲେ ।

ଅଧ୍ୟକ୍ଷ କହିଲେ, 'ବିଶ୍ୱାସ କରିବି କ'ଣ, ନିଜ ଆଖିରେ ଦେଖିଛି ଅନେକ ଥର ।' ତାଙ୍କ କଣ୍ଠରେ ଅଧ୍ୟକ୍ଷସୁଲଭ ଦୃଢ଼ତା ।

'ଆଖିରେ ଦେଖିଛନ୍ତି ?' ମୁଁ କଥାଟାକୁ ଲଘୁ କରିବାକୁ କହିଲି, 'ଆପଣଙ୍କ ମନର ଭ୍ରମ ହୋଇପାରେ ।'

ସେ କହିଲେ, 'ହଁ- ହୋଇପାରେ । କିନ୍ତୁ ଦୁବ, ରକ୍ତଲଗା ଚାଉଳ ଶୂନ୍ୟରୁ ପଡ଼ିବା ଦେଖିଛି । – ପରେ ସେ ସବୁ ନିଆଁରେ ଅନ୍ୟମାନଙ୍କ ସାମ୍‌ନାରେ ପୋଡ଼ିଛି । ଜିନିଷଗୁଡ଼ିକ ଧରିବା, ଦେଖିବା, ପୋଡ଼ିବା – ଏ ସବୁକୁ ମନର ଭ୍ରମ ବୋଲି ଆପଣ କହିବେ ?'

ଟୋପିପରିହିତ ଡ୍ରାଇଭର ଏଇ ସମୟରେ ଏକ ଅସ୍ପଷ୍ଟ ଶବ୍ଦ କଲେ । ସେ ଯେ ଅଧ୍ୟକ୍ଷଙ୍କ କଥା ଶୁଣୁଛନ୍ତି, ତାହା ମୁଁ ଏଯାଏଁ ଜାଣି ନଥିଲି । ମୋ ସହକର୍ମୀ ଅବଶ୍ୟ ଆଉ ଢୁଳାଉ ନଥିଲେ, ଗଭୀର ନିଦ୍ରାରେ ଶୋଇ ସାରିଥିଲେ ।

ମୁଁ ପରାଜିତ ସ୍ୱରରେ କହିଲି, 'କେବେ ଦେଖିଲେ ଆଜ୍ଞା ?'

ସେ କହିଲେ, 'ଏଇ ପାଞ୍ଚ ଛଅ ଦିନ ତଳର କଥା କହୁଛି । ହଠାତ୍ ଆମ ଲାଇବ୍ରେରୀ ପିଅନ ଆକୁଳି ମରିଗଲା । ବୁଢ଼ା ହୋଇ ଯାଇଥିଲା, ହାର୍ଣ୍ଣିଆ ଅପରେସନ୍ ହୋଇଥିଲା, ଏଣେ ହାର୍ଟ-ଟ୍ରବ୍‌ଲ୍ ବି ଥିଲା । ହଠାତ୍ ଲାଇବ୍ରେରୀରେ ଫେଣ୍ଟ୍ ହୋଇଗଲା । ତାକୁ ଡାକ୍ତରଖାନାକୁ ନବାର ବ୍ୟବସ୍ଥା କଲୁ । ବାଟରେ ବିଚରା ଚାଲିଗଲା ।'

'ତା ପରେ ?' ଏଥର ପ୍ରଶ୍ନ କଲେ ମୋ ସହକର୍ମୀ । ଏହା ଭିତରେ ସେ କେତେବେଳେ ଉଠି ସାରିଥିଲେ ।

ଅଧ୍ୟକ୍ଷ କହିଲେ, 'ତା'ପରେ ଆଉ କ'ଣ ? ମୁଁ ହିଁ ତା ଶବରେ ଫୁଲମାଳ ଦେଇ, ହାତରୁ ଟଙ୍କା ଦେଇ ଶବସଂସ୍କାର ଆୟୋଜନ କଲି । ସବୁ ସାରି କ୍ୱାଟର୍‌ସକୁ ଫେରୁ ଫେରୁ ସଞ୍ଜ ।' ସେ ଟିକିଏ ଚୁପ୍ ରହିଲେ । ହଠାତ୍ ଯେମିତି ସ୍ୱର ବଦଳାଇ ଆରମ୍ଭ କଲେ, 'ହଠାତ୍ ସେ ଦିନ ରାତିରେ ମୋ କ୍ୱାଟର୍‌ସ୍‌ର ଲାଇଟ୍‌ସବୁ କଟିଗଲା । ରାତିରେ ଆଉ ଲାଇଟ୍ ଆସିବାର ଆଶା ନଥାଏ । ଘରେ ପିଲାପିଲି ନଥାନ୍ତି । ଯେଉଁ ପିଅନ ସେ କ୍ୱାଟର୍‌ସ୍‌ରେ ଶୁଏ, ସେ ବି ଯାଇଥାଏ ଗାଁ'କୁ । ଏକୁଟିଆ କ'ଣ କରିବି ? ମନଟା ବି ଭଲ ନଥାଏ । ବାହାର ବାରଣ୍ଡାରେ ଆରାମ ଚେୟାର ପକାଇ ବସି ରହିଲି ।'

ଏଇଠାରେ ସେ ସିଗାରେଟ୍ ଲଗାଇବା ପାଇଁ କିଛି ସମୟ ଅଟକିଲେ । ତା'ପରେ କହିଲେ, 'ଆରାମ ଚେୟାର ଉପରେ ବସି ବସି ସିଗାରେଟ୍ ଟାଣୁଥାଏ । ମୋ କ୍ୱାଟର୍‌ସର ସାମନାରେ ଲାଇବ୍ରେରୀ । ମୋତେ ଦିଶୁଥାଏ, ଆକୁଳି ଲାଇବ୍ରେରୀ ରୁମ୍‌ରେ ବସିଛି, ଗୋଡ ଘୋଷାରି ଘୋଷାରି ଏପଟ ସେପଟ ହେଉଛି, ବହିସବୁ ଥାକରେ ସଜାଡ଼ି ରଖୁଛି ।'

ପୁଣି କିଛି ସମୟ ନୀରବତା ।

ଆକୁଳିକୁ ଜୀବନରେ କେବେ ଦେଖି ନଥିଲେ ବି ମନେ ହେଉଥିଲା, ଯେମିତି ନିଛାଟିଆ କୌଣସି ଲାଇବ୍ରେରୀ ରୁମ୍‌ରେ ବୁଢ଼ାଟିଏ ପାଦ ଘୋଷାରି ଘୋଷାରି ଚାଲୁଥିବାର ମୁଁ ଦେଖି ପାରୁଛି ! କାହାର ଚେହେରା ମୋତେ ଏମିତି ଦିଶିଯାଉଛି, କେଜାଣି ! ଅଧ୍ୟକ୍ଷ କହୁଥିଲେ, 'ସେତେବେଳେ ଦଶମ ଶ୍ରେଣୀରେ ପଢୁଥାଏ । ଜାନକାଦେଈପୁର ଷ୍ଟେସନ ନିକଟରେ ଭାର୍ଗବୀ ନଈ କୂଳରେ ଆମର ଗାଁ । ଦିନେ ରାତିରେ-ରାତି ଦଶଟା ହେବ ନା କ'ଣ- ଚନ୍ଦନପୁର ହାଟରୁ ମାଛ ନେଇ ଫେରୁଛି । ଶସ୍ତାରେ ମାଛ ପାଇଥିବାରୁ ମନ ଖୁସି ଅଛି । ଦେଖିଲି- ଆଗରୁ ନଈଆଡୁ ଗୋଟିଏ ବେଡା ଆସ୍ତେ ଆସ୍ତେ ଉପରକୁ ଉଠି ଉଠି ଆସୁଛି । ଟିକିଏ ଆଶ୍ଚର୍ଯ୍ୟ ହେଲି ବେଡାଟା ଆସୁଛି, ମଣିଷ କାହିଁ ? ଭାବିଲି, ମନର ଭ୍ରମ ହୋଇପାରେ । ହଠାତ୍ ବେଡାଟା କୁଆଡେ ଅନ୍ତର୍ଦ୍ଧାନ ହୋଇଗଲା, ଧଳାଲୁଗା ପିନ୍ଧା ମାଇପିଟିଏ ଚାଲିଛି । ସଫା ଜହ୍ନ ଆଲୁଅ ପଡ଼ିଥାଏ । ମୋତେ କାହିଁକି ଟିକିଏ ଡର ଡର ଲାଗୁଥାଏ । କେତେକ୍ଷଣ

କୁଲି ରେଲ୍ ଲାଇନ୍ ଉପରେ ବସିଥିଲେ, ଦୈବାତ୍ ମତେ ଦେଖିଲେ । ପଚାରିଲେ, 'ବାବୁ, ଏତେ ରାତିରେ କୁଆଡେ ବାହାରିଛ ? ଏଇ ଆଗ ଗଛରେ ଗୋଟେ ବଦ୍‌ମାସ୍ ଅଛି । ଆଉ ଏମିତି ଆସିବ ନାହିଁ । ହଉ ଚାଲ, ତୁମକୁ ଘରେ ଛାଡ଼ି ଦେଇ ଆସିବୁ ।'

ଆଉ ଥରେ ଆଇ.ଏ. ରେଜଲ୍‌ଟ୍ ଖବର କାଗଜରେ ବାହାରିବାର ଥାଏ । ରାତି ଆସାନସୋଲ ଟ୍ରେନ୍‌ରେ ଖବର କାଗଜ ଆସିଥିବ ବୋଲି ମୁଁ ଓ ମୋର ଜଣେ ସାଙ୍ଗ ଷ୍ଟେସନକୁ ଆସିଥାଉ । ଖବର କାଗଜ ତ ଆସିଲା ନାହିଁ, ରାତି ଦୁଇଟାରେ ଘରକୁ ଫେରିବା କଥା । ମୋ ସାଙ୍ଗ ସାଇକେଲ ଚଳାଉଥାଏ । ମୁଁ ପଛରେ ବସିଥାଏ । କେତେବାଟ ଫେରିବା ପରେ ଦେଖିଲି, ଆମର କିଛି ଆଗରେ ନିଆଁ ହୁଳା ପରି କିଛି ଗୋଟିଏ ଘୁରି ଘୁରି ଚାଲିଛି । ଆମେ ଯେତେ ଯେତେ ଗାଁ ପାଖକୁ ଆସୁଥାଉ, ନିଆଁ ହୁଳାଟା ସେତିକି ସେତିକି ଆଗକୁ ଆଗକୁ ଘୁଞ୍ଚି ଯାଉଥାଏ ।

ମୋ ସାଙ୍ଗ ମୋତେ କହିଲା, 'ହେଇ ଦେଖୁଚୁ, ଆଗରେ ଏଇଟା କ'ଣ ?' ମୁଁ ନିଆଁ ହୁଳାଟା ଠିକ୍ ଦେଖୁଥାଏ, କିନ୍ତୁ ତାକୁ ସାହସ ଦେବାପାଇଁ କହିଲି, 'କାହିଁମ କ'ଣ ? ତୁ କାହିଁକି ଡରୁଛୁ ? ମୁଁ ତ ତୋଠାରୁ ବୟସରେ ବଡ଼, ଯାହା ହେଲେ ବୁଝିବିନି ?' କିନ୍ତୁ ମୋ ସାଙ୍ଗ ଶେଷରେ ନର୍ଭସ୍ ହୋଇଗଲା । ଗାଁ ମୁଣ୍ଡ ଦେଉଳରେ ସାଇକେଲଟା ଭସ୍ କରି ଲଗାଇଦେଲା । ସେଇ ଶବ୍ଦରେ ଦେଉଳ ପାଖ ଘରୁ ଜଣେ ଦି'ଜଣ ଉଠି ପଡ଼ିଲେ । ଆମକୁ ନେଇ ଘରେ ପହଞ୍ଚାଇ ଦେଲେ ।'

'ଆପଣଙ୍କର ବହୁତ ସାହସ !' ମୁଁ ମନ୍ତବ୍ୟ ଦେଲି ।

ଅଧ୍ୟକ୍ଷ ମହୋଦୟ ମୋ କଥା ନଶୁଣି ଆଉ ଗୋଟିଏ ଗପ ଆରମ୍ଭ କଲେ, 'ଥରେ ମୋର ବହୁତ ସକାଳୁ ଉଠିବାର ଥାଏ । କଥା କ'ଣ କି ଗୋଟିଏ ଜମିର ସୀମା ସମ୍ପର୍କରେ ବିବାଦ ହୋଇଥାଏ । ସେ ଦିନ ସକାଳୁ ଉଠିଲେ ଜମିର ମାପଚୁପ କରାଇବି । ପୁଣି ଟ୍ରେଜେରୀରୁ କୌଣସି ଜରୁରୀ କାମ ପାଇଁ ବିଲ୍ ଦେଇ ଟଙ୍କା ଆଣିବାର ଥାଏ । ସେ ଜମିର ସୀମା ସମ୍ପର୍କରେ ମୁଁ ସେତେ ପର୍ଟିକୁଲାର୍ ନଥିଲି । କିନ୍ତୁ ବୋଉ ପୂର୍ବଦିନ ସଞ୍ଜରେ ରାଗି କହିଥାନ୍ତି, ବାପା ଥିଲେ ଆଜି ସେ ଅମୁକ ଲୋକ ଆମ ଜମିରୁ ଖଣ୍ଡେ ଦଖଲ କରିଯାଇନଥାନ୍ତା ।

'ପାହାନ୍ତାଟାରୁ ଅନୁଭବ କଲି, କେହିଜଣେ ମୋତେ ହଲେଇ ଦେଇ ଡାକୁଛି, କିରେ ଶୋଇଛୁ କ'ଣ, ଉଠ୍ । ଉଠୁନୁ । ମୁଁ ଜାଣି ପାରିଲି ନାହିଁ, କିଏ ଏମିତି

ଡାକୁଛି । ଘାଲେଇ ଶୋଇଥାଏ । ପୁଣି ଥରେ ସେମିତି କେହି ଡାକିଲା – ଏଥର ଆଉରି ଜୋରରେ, କିରେ ଉଠିଲୁ ? ଡାକୁଛି ପରା । ଏଥର ବାଧ ହୋଇ ଉଠିଲି । ନିତ୍ୟକର୍ମ ସାରି ଜମି ମାପିବା ପାଇଁ ଗଲି ।’

‘ଆପଣଙ୍କ ବାପା ସେମିତି ଡାକିଲେ ବୋଲି ଆପଣ ଭାବୁଛନ୍ତି ?’– ମୁଁ ପଚାରିଲି ।

ସେ କହିଲେ, ‘ସେମିତି କହିପାରୁନାହିଁ । ବାପାଙ୍କ ସ୍ୱର ଶୁଣିବା ପାଇଁ ମୁଁ ତ ପ୍ରସ୍ତୁତ ନଥିଲି । ତେଣୁ ହୁଏତ ସ୍ୱରଟା ଧରି ପାରିଲି ନାହିଁ । କିନ୍ତୁ ନିଶ୍ଚୟ କେହି ଜଣେ ମୋତେ ଡାକିଛି ।’

ମୋ ସହକର୍ମୀ ଏ ଯାଏଁ ପ୍ରାୟ ଚୁପ୍ ରହିଥିଲେ । ବଡ଼ ପାଟିରେ ଆରମ୍ଭ କଲେ– ‘ନାଇଁ ସ୍ପିରିଟ୍ ବୋଲି କିଛି ଅଛି । ବହୁତ ପ୍ରମାଣ ମିଳିଲାଣି ।’

ମୁଁ ପଚାରିଲି, ‘କିନ୍ତୁ ଭୂତ ବା ସ୍ପିରିଟ୍ ବା ଯାହା କହନ୍ତୁ, ସେମାନେ ଗାଁଆରେ ରହିବାକୁ ପ୍ରେଫର୍ କରନ୍ତି କାହିଁକି ? ସହରରେ ତ ବେଶୀ ଭୂତ ବାହାରିବା ଦେଖାଯାଏ ନାହିଁ ।’

ମୋ ସହକର୍ମୀ କହିଲେ– ‘ହୁଏତ ଗାଁ’ର ବାତାବରଣ ସେମାନଙ୍କ ପାଇଁ ସୁଟେବ୍‌ଲ୍ ହେଉଥିବ ।’

ଅଧକ୍ଷ ଗମ୍ଭୀର ଦିଶୁଥିଲେ- ଭୂତମାନଙ୍କୁ ଆଖିରେ ଦେଖିଥିବା ବ୍ୟକ୍ତି ଗମ୍ଭୀର ଦିଶିବା ସ୍ୱାଭାବିକ । କହିଲେ, ‘ନାଇଁ, ସହରରେ ବି ତ ଭୂତ ଅନେକ ସମୟରେ ଦେଖାଯାଏ । ମୋର ଜଣେ ଭିଣୋଇ ବରହମ୍‌ପୁରରେ ଗୋଟିଏ ପୁରୁଣା କୋଠା ଘର କିଣିଥିଲେ । ବରହମପୁରରେ ବି.ଏ. ପଢ଼ିବାବେଳେ ସେଇଘରେ ମୁଁ ରହୁଥିଲି । ଅନେକ ଥର ଦେଖିଛି– ଶୂନ୍ୟରୁ ଦୁବ, ରକ୍ତଲଗା ଚାଉଳ ଘରେ ପଡ଼େ । ଥରେ ମୋ ନାନୀର ମାସକର ଝିଅଟିକୁ କିଏ ଗୋଟିଏ ଜାଗାରେ ପକେଇ ଦେଇଥିଲା । କେତେଥର ଦେଖିଛି, ଧଳା ମଣିଷଟିଏ ଏଇ ମୁହୂର୍ତ୍ତରେ ପାଖରେ ଠିଆ ହୋଇଛି, ଆର ମୁହୂର୍ତ୍ତରେ ନାହିଁ ।’

‘ଏବେ ବି କ’ଣ ସେ ଘରେ ସେମିତି ଦୁବ, ରକ୍ତଲଗା ଚାଉଳ ପଡୁଛି ?’– ମୁଁ ପଚାରିଲି ।

ସେ କହିଲେ, 'ନାଇଁ, ଗୋଟିଏ ଫେମସ୍ ଗୁଣିଆ ଆସି କ'ଣ ମନ୍ତ୍ର କଲା ପରେ ଆଉ ସେମିତି ହୋଉନାହିଁ ।'

ଏହା ଭିତରେ ଆମେ କଟକର ନିକଟବର୍ତ୍ତୀ ହୋଇ ସାରିଥିଲୁ । ଲେଭେଲ କ୍ରସିଂ ପାଖରେ କାର୍ କେତେ ମିନିଟ ପାଇଁ ଅଟକିଲା । ସେଇଟି ଅଧକ୍ଷ ଶେଷ ଗପଟି କହିଲେ–

'ସ୍କୁଲରେ ପଢୁଥାଏ, ଆମ ଗାଁଆରୁ ମାମୁଁ ଗାଁଆକୁ ବାହାରିଲି– । – ବାଟ ଭୁଲି ଚିହ୍ନା ହିଡ଼ ଛାଡ଼ି ଅଚିହ୍ନା ହିଡ଼ରେ ପଶିଲି । ହଠାତ୍ କିଆବୁଦା ପାଖରେ ଦେଖିଲି, ଲଙ୍ଗଳା ମାଇପିଟିଏ ମୋ ଆଗରେ ଠିଆ ହୋଇଛି । ଚମକିପଡି ପଛକୁ ଘୁଞ୍ଚି ଆସିଲି । ମାଇପିଟି ମଝିରେ ମଝିରେ ମୁଣ୍ଡ ହଲାଉ ଥାଏ । କିଛି ସମୟ ପରେ ସାହସକରି ପାଖକୁ ଗଲି । ଦେଖିଲି, ଗୋଟିଏ ମାଇପିର ଶବକୁ ବିଲୁଆମାନେ ଝିଙ୍କା ଓଟରା କରିବାରୁ ଦୂରରୁ ସେମିତି ଦେଖାଯାଉଛି । ପରେ ଜାଣିଲି, ସେ ଗାଁଆରେ ହଇଜା ଲାଗିଥିଲା । ଲୋକେ ମଲା ମଣିଷସବୁ ବିଲରେ ସେମିତି ଶୁଆଇ ଦେଇ ଯାଉଥିଲେ ।'

କଟକରେ ଅଧକ୍ଷ କାର୍‌ରୁ ଓହ୍ଲାଇ ଗଲେ । ଓହ୍ଲାଇ ଯିବା ଆଗରୁ ତାଙ୍କ ଘର ସାମ୍‌ନାରେ ଆମକୁ କହିଲେ, 'ରାତିରେ କାର୍‌ରେ ଆସିବାବେଳେ ଟିକିଏ ଗପି ଗପି ଆସିବା ଭଲ । ସମସ୍ତେ ଘୁମାଇଲେ ଡ୍ରାଇଭରକୁ ବି ନିଦ ମାଡ଼ି ପାରେ ।'

ରାତି ଗୋଟାଏ ହୋଇଥିଲେ ବି ମୁଁ, ମୋର ସହକର୍ମୀ ଓ ଟୋପିପରିହିତ ଡ୍ରାଇଭର ବେଶ୍ ସଚେତ ଥିଲୁ ।

କଟକରୁ ଭୁବନେଶ୍ୱର ଆସିବାବେଳେ ସେଇ ଭୂତମାନେ ହିଁ ଆମକୁ ଆଲୋଚନା ପାଇଁ ଯୋଗାଇ ଦେଇ ଥିଲେ ପ୍ରଚୁର ଖୋରାକ ।□

(୧୯୭୯)

# କୋଣାର୍କରେ ନିଃସଙ୍ଗ ପରିବ୍ରାଜକ

ଅଳ୍ପ ସମୟ ପୂର୍ବେ ସେ କୋଣାର୍କର ମୂର୍ତ୍ତିସବୁର ଫଟୋ ଉଠାଉଥିଲେ। ବର୍ତ୍ତମାନ କୋଣାର୍କ ପାନ୍ଥନିବାସ ବାରନ୍ଦାରେ ନୀରବରେ ବସିଛନ୍ତି। ହସ ହସ ମୁଖମଣ୍ଡଳରୁ ମନେହେଉଛି ମେଳାପୀ ହୋଇଥିବେ। ବୃଦ୍ଧ, ରୂପା ପରି କେଶ, ସୁଗଠିତ ଚେହେରା। ଜିନ୍ ପ୍ୟାଣ୍ଟ୍– ହାୱାଇନ୍ ପରିଧାନରେ ତଥାପି ଲାଗିରହିଛି ତାରୁଣ୍ୟର ବେପରୁଆ ଭାବ।

ସହଜରେ ଆଳାପ ହେଲା। ଆମାୟିକ ଢ଼ଙ୍ଗରେ ସେ ଗପିଚାଲିଲେ ତାଙ୍କ ଜୀବନର କାହାଣୀ।

ଘର ପ୍ୟାରିସ୍, ନାମ ଚାର୍ଲସ୍ ଡ଼ି.ଶର୍ମୟ। ପେଶାରେ ଡିଜେଲ ଇଞ୍ଜିନିୟର। ଚାକିରୀରେ ସୁନାମ ଥିଲା। ବର୍ତ୍ତମାନ ଅବସର ପରେ ପେନ୍‌ସନ୍ ଟଙ୍କାରେ ଚଳନ୍ତି। ଅବସର ପରେ ତାଙ୍କର ନିଶା ଦେଶଭ୍ରମଣ। ଏକାକୀ ରହିବାକୁ ଭଲ ପାଆନ୍ତି; ଏକାକୀ ରହିଆସିଛନ୍ତି ଜୀବନସାରା। ପେନ୍‌ସନ୍ ଟଙ୍କାରେ ତେଣୁ ଦେଶଭ୍ରମଣରେ ବାଧା ଦେବ କିଏ ?

ବାରମ୍ବାର ସେ ଆସିଛନ୍ତି ଭାରତକୁ-କୋଣାର୍କକୁ ମଧ୍ୟ। ନିକଟ ଭବିଷ୍ୟତରେ ତୁର୍କୀ ଦେଶକୁ ଯିବାର ଯୋଜନା କରୁଛନ୍ତି। ଭାରତକୁ କିନ୍ତୁ ସେ ଖୁବ୍ ଭଲପାଆନ୍ତି। ଖୁବ୍ ଯତ୍ନରେ ସାଇତି ରଖିଛନ୍ତି ଭାରତର ଅସଂଖ୍ୟ ଫଟୋ। ବନ୍ଧୁମାନେ ତାଙ୍କ ଫ୍ଲାଟକୁ ଆସିଲେ ସେ ସେମାନଙ୍କୁ ଭାରତର ଫଟୋସବୁ ଦେଖାନ୍ତି। 'ଭାରତର ମୁଁ ଜଣେ ବେସରକାରୀ ପ୍ରଚାରକ' –ତାଙ୍କର ପରିହାସମିଶା ମନ୍ତବ୍ୟ।

ଫରାସୀ ଉଚ୍ଚାରଣ ସତ୍ତ୍ୱେ ଖୁବ୍ ଭଲ ଇଂରାଜୀ କହିପାରୁଥିଲେ ସେ। ଆଜିକାଲି କ୍ରମଶଃ ବିଦେଶଭ୍ରମଣ କଠିନ ହୋଇପଡ଼ୁଛି– ସେ ଗପି ଚାଲିଲେ– ଦେଶ-ଦେଶ ଭିତରେ ସନ୍ଦେହ ବଢ଼ିଚାଲିଛି– ସେଥିରେ ପୁଣି ଆନ୍ତର୍ଜାତିକ ହିଂସା-କାଣ୍ଡ। ତେବେ ଫ୍ରାନସ୍ ଓ ଜର୍ମାନୀ ମଧ୍ୟରେ ସ୍ୱଚ୍ଛନ୍ଦ ଭ୍ରମଣରେ କୌଣସି ବାଧା ନାହିଁ। ଜର୍ମାନ୍ ଭାଷା ତାଙ୍କୁ ଖୁବ୍ ଭଲ ଜଣା। ପ୍ୟାରିସରୁ ଟ୍ରେନ୍‌ରେ ସେ ଅନେକ ସମୟରେ ଚାଲିଯାଆନ୍ତି କୋଲୋନ୍।

'ବିଦେଶ ଭ୍ରମଣ ଅନୁଭୂତିକୁ ଆପଣ ଲିପିବଦ୍ଧ କରୁନାହାନ୍ତି କାହିଁକି ?' ପଚାରିଲି ।

'ଭ୍ରମଣରେ ମୋର ସବୁ ସମୟ ଯାଏ, ଲେଖାଲେଖି ପାଇଁ ସମୟ କାହିଁ ?' ତାଙ୍କର ଉତ୍ତର ।

ଆମ ଆଳାପ ମଝିରେ ପହଞ୍ଚିଲେ ଆଉ ଦୁଇଜଣ ବିଦେଶୀ ପର୍ଯ୍ୟଟକ--- ଜଣେ ପୁରୁଷ, ଜଣେ ମହିଳା । ଭାରତୀୟ ରୀତିରେ ସେ ନମସ୍କାର ଜଣାଇଲେ ଚାର୍ଲସ୍‌ଙ୍କୁ । ଭାରତ ସମ୍ପର୍କରେ କିଛି ସମୟ ଗପିଲେ ଜର୍ମାନ୍ ଭାଷାରେ ।

ତାପରେ ପର୍ଯ୍ୟଟକ ଦୁହେଁ ଚାଲିଗଲେ । ମୁଁ ମଧ୍ୟ ବିଦାୟ ନେଲି ।

ଚାର୍ଲସ୍ ସେମିତି ବସିରହିଥାନ୍ତି କୋଣାର୍କ ପାନ୍ଥନିବାସ ବାରନ୍ଦାରେ । ହସ ହସ, ନୀରବ । ସନ୍ଧ୍ୟାରେ ଯିବେ ପୁରୀ । ଓଡ଼ିଶାରୁ ରାଜସ୍ଥାନ । ତା ପରେ... ?

ତାପରେ ଅନ୍ୟ କେଉଁ ଅପରିଚିତ ଜନପଦ, ପ୍ରାଚୀନ କୀର୍ତ୍ତି, ମନ୍ଦିର, ମସଜିଦ୍... ।

ସତୁରୀ ଅତିକ୍ରମ କରିସାରିଛନ୍ତି । ବିଦେଶ ଭ୍ରମଣର ସ୍ୱପ୍ନରେ କିନ୍ତୁ ସେ ଦିଶୁଥିଲେ ଜଣେ ଦୁଃସାହସିକ ତରୁଣ ପରି... ।❒

(୧୯୮୬)

# କେଉଁ ଭାଷାରେ କଥା କହେ ରାଉରକେଲା

ଗତ ମାସରେ ପୁରୁଣା ରାଉରକେଲାର କୌଣସି ବ୍ୟାଙ୍କ୍‌ରେ ଗୋଟିଏ ଘଣ୍ଟା କଟାଇବା ଅବସରରେ ଲକ୍ଷ୍ୟ କଲି-କର୍ମଚାରୀମାନଙ୍କ ଆଳାପ-ଆଲୋଚନା, କଥାବାର୍ତ୍ତା ଚାଲିଛି ତିନୋଟି ଭାଷାରେ-ଇଂରାଜୀ, ହିନ୍ଦୀ, ଓଡ଼ିଆରେ । ମୁଖ୍ୟ ରାସ୍ତାର ସାଇନବୋର୍ଡ ସବୁ ମୁଖ୍ୟତଃ ଇଂରାଜୀରେ-ଧନାଢ୍ୟ ବ୍ୟକ୍ତିଙ୍କ ପାର୍ଶ୍ୱରେ ଗାଉଁଲି ଚାକରପରି ସ୍ଥାନେ ସ୍ଥାନେ ଓଡ଼ିଆ ଅକ୍ଷର । ବଜାରମାନଙ୍କ ସାଜସଜ୍ଜା, ବାତାବରଣ ଉତ୍ତରଭାରତୀୟ । ଆପାତତଃ ବଜାରମାନଙ୍କରେ ଓଡ଼ିଆ ଅପେକ୍ଷା ହିନ୍ଦୀର ପ୍ରଚଳନ ଅଧିକ ।

ଓଡ଼ିଶାର ବୃହତ୍ତମ ସହର ରାଉରକେଲା । ଜନସଂଖ୍ୟା କଟକଠାରୁ ଅଧିକ । କେଉଁ ଭାଷାରେ କଥା କହେ ସେ ? ଓଡ଼ିଆ, ହିନ୍ଦୀ ନା ଇଂରାଜୀରେ ?

କୋଡିଏ ବର୍ଷ ତଳେ ଆସିଥିଲି ରାଉରକେଲା । ସେଇ ପ୍ରଶ୍ନଟି ହିଁ ସେତେବେଳେ ମୋତେ ବିଚଳିତ କରିଥିଲା । କୌଣସି ଓଡ଼ିଆ ଦୈନିକରେ ଲେଖାଟିଏ ଲେଖିଥିଲି । ସେତେବେଳେ ମୋର ଅଭିଯୋଗ ଥିଲା ତିନୋଟି-ରାଉରକେଲାରେ ଓଡ଼ିଆ ପତ୍ର-ପତ୍ରିକା ପାଇଲି ନାହିଁ; ସାଇନବୋର୍ଡମାନଙ୍କରେ ବିକୃତ ଓଡ଼ିଆ ଲେଖାଯାଇଛି; ଓଡ଼ିଆ ରିକ୍‌ସାବାଲା ମୁଁ ଓଡ଼ିଆ ଜାଣି ବି ମୋ ସାଙ୍ଗେ ହିନ୍ଦୀରେ କଥାବାର୍ତ୍ତା କଲା, କାରଣ ସେ ଜାଣେ ରାଉରକେଲା 'ବିହାର'ରେ ।

ଅବସ୍ଥା ବଦଳିଛି ଯା ଭିତରେ ? ସେଇ ପ୍ରଶ୍ନ ପଚାରିଲି ରାଉରକେଲାର ବନ୍ଧୁମାନଙ୍କୁ । '୧୯୬୬ରେ ମୁଁ ରାଉରକେଲା ଆସିବା ସମୟରେ ସବୁ ଆଡ଼େ କେବଳ ହିନ୍ଦୀ ହିଁ ଶୁଣିବାକୁ ମିଳୁଥିଲା ।' କହିଲେ ଅଧ୍ୟାପକ-ବନ୍ଧୁ, 'କିନ୍ତୁ ଆଜି ସେ ଅବସ୍ଥା ନାହିଁ । ଆପଣ ଯେକୌଣସି ଅଞ୍ଚଳରେ ବର୍ତ୍ତମାନ ଓଡ଼ିଆ ଶୁଣିପାରିବେ । ଆମ ସିଭିକ୍ ସେଣ୍ଟର ହଲରେ ସବୁ ବେଳେ ଓଡ଼ିଆ ନାଟକ ହୁଏ । ଓଡ଼ିଆ ସଂସ୍କୃତିର ଯଥେଷ୍ଟ ପ୍ରସାର ଘଟିଛି ।' ଅଧ୍ୟାପକ ବନ୍ଧୁଙ୍କ ସନ୍ତୁଷ୍ଟ ହସ । ସାମ୍ବାଦିକ ବନ୍ଧୁ ମୋ ପ୍ରଶ୍ନର ଉତ୍ତରରେ ଦେଖାଇଦେଲେ ତାଙ୍କର ଡାଏରୀ । ସଂଖ୍ୟାରେ ସେ ବିଶ୍ୱାସ କରନ୍ତି । ଇସ୍ପାତ କାରଖାନାରେ ଶତକଡା ପଞ୍ଚଷଠି ଓଡ଼ିଆ (ଆଦିବାସୀ ସମେତ) । ସେ ଆସିବା ସମୟରୁ ଅର୍ଥାତ୍ ୧୯୫୩ରୁ ରାଉରକେଲା ଦଶଗୁଣ ବଢ଼ିଛି । ପ୍ରଥମେ କୌଣସି ଓଡ଼ିଆ ଉଚ୍ଚ ପଦ ପଦବୀରେ ନଥିଲେ । ଏବେ ସେମାନଙ୍କର ସଂଖ୍ୟା ଶତକଡ଼ା କୋଡ଼ିଏ ।

ଉଭୟ ବନ୍ଧୁ ଠିକ୍ କହିଥିଲେ । ରାଉରକେଲାରେ ପୂର୍ବାପେକ୍ଷା ଓଡ଼ିଆ ଭାଷାର ପ୍ରଚଳନ ବଢ଼ିଛି । ଓଡ଼ିଆଙ୍କ ସଂଖ୍ୟା ଯଥେଷ୍ଟ ବଢ଼ିଛି । କିନ୍ତୁ ଶୁଣନ୍ତୁ, ମୋତେ ବେଦବ୍ୟାସ ଓ ପାନପୋଷ ବୁଲାଇଥିବା ବିହାରୀ ଟ୍ୟାକ୍ସିବାଲାର ମତ– 'ଏଠି ଓଡ଼ିଆ ଅପେକ୍ଷା ହିନ୍ଦୀ ଅଧିକ ଚଳେ ।' ଠିକ୍ ସେଇ କଥା ମୋତେ କହିଥିଲା ଓଡ଼ିଆ ରିକ୍ସାବାଲା, କୋଡ଼ିଏ ବର୍ଷ ତଳେ । X X X

'ଓଡ଼ିଶାକୁ ଶିଳ୍ପାୟିତ କର', ଏଇ ରାଜନୀତିକ ଓ ଅର୍ଥନୀତିକ ସ୍ଲୋଗାନ୍ ଆମେ ଶୁଣିବାକୁ ପାଉଛୁ ସର୍ବଦା । ଓଡ଼ିଶାରେ ଶିଳ୍ପାୟନର ଯୁଗ ଆରମ୍ଭ ହୋଇ ସାରିଛି । ରାଉରକେଲା, ପାନପୋଷ, ସୁନାବେଡ଼ା– କ୍ଷୁଦ୍ର ବୃହତ୍ ସହରସବୁ ତାହାରି ପରିଣତି । ଗଢ଼ି ଉଠିବାକୁ ଯାଉଛି-ଦାମନଯୋଡ଼ି, ଦଇତାରି । ରାଜନୀତିଜ୍ଞ ଓ ଅର୍ଥନୀତିଜ୍ଞମାନେ ସଂଖ୍ୟାରେ ପ୍ରମାଣ ଦେଉଛନ୍ତି- ଏଇ ଶିଳ୍ପାୟନ ଫଳରେ ମୁଣ୍ଡ ପିଛା ଆୟ ବଢ଼ିବ । ଓଡ଼ିଶା ସମୃଦ୍ଧ ହେବ । ସେମାନଙ୍କ ବିଜ୍ଞତାରେ ଆମର ସନ୍ଦେହ ନାହିଁ । ମୁଁ କିନ୍ତୁ ଏଠାରେ ଭାଷା ଓ ସଂସ୍କୃତିର ପ୍ରଶ୍ନ ଉଠାଉଛି ।

ଆମେ ଲକ୍ଷ୍ୟକରୁଛୁ, ଶିଳ୍ପବିପ୍ଳବ ସାଙ୍ଗରେ ଓଡ଼ିଶାର ସାଂସ୍କୃତିକ ମାନଚିତ୍ର ବଦଳି ଯାଉଛି ଦ୍ରୁତ ଗତିରେ । ଶିଳ୍ପ ସଙ୍ଗରେ ଓଡ଼ିଶାକୁ ଟାଣିହୋଇ ଆସୁଛନ୍ତି ହିନ୍ଦୀ ଓ ତେଲୁଗୁଭାଷା, ପଞ୍ଜାବୀ ନାନ୍, ତଡ଼କା, ଗୁରୁଦ୍ୱାରା । ଓଡ଼ିଶାର କେତେକ କ୍ଷୁଦ୍ର ଶିଳ୍ପ-ଅଞ୍ଚଳରେ ଓଡ଼ିଆମାନେ ସଂଖ୍ୟାଲଘୁ । ଯେପରି ପାନପୋଷ । ମୋଟ ଲୋକସଂଖ୍ୟା ଦଶହଜାର । ଓଡ଼ିଆଙ୍କ ସଂଖ୍ୟା ଶତକଡ଼ା ତିରିଶି । ଅନ୍ୟ ଭାଷାରେ କହିଲେ, ଶିଳ୍ପ ବିପ୍ଳବ ପରିପ୍ରେକ୍ଷୀରେ ଓଡ଼ିଆ ଭାଷା ଓ ସଂସ୍କୃତି ପାଇଁ ଆସିଛି ଗୋଟାଏ ଚ୍ୟାଲେଞ୍ଜ୍ ବା ଆହ୍ୱାନ । ଓଡ଼ିଆ ଭାଷା ଓ ସଂସ୍କୃତି ଶିଳ୍ପାୟିତ ଓଡ଼ିଶାରେ ତାର ଗୌରବ ଓ ଗରିଷ୍ଠତା ରକ୍ଷାକରି ପାରିବ ତ ?

ଶିଳ୍ପ-ବିପ୍ଳବ ଯେପରି ଅବଶ୍ୟମ୍ଭାବୀ, ସେହିପରି ଅବଶ୍ୟମ୍ଭାବୀ ଓଡ଼ିଆ ମାଟିରେ ଅଣ-ଓଡ଼ିଆ ସଂସ୍କୃତିର ଅନୁପ୍ରବେଶ । ଏହାର ପ୍ରତିରୋଧ ପାଇଁ ଏଠାରେ ଯୁକ୍ତି କରାଯାଉନାହିଁ । ଏହାର ପ୍ରତିରୋଧ ଅର୍ଥନୀତିକ ଓ ରାଜନୀତିକ କାରଣରୁ ଅବାନ୍ତର । କିନ୍ତୁ ଏଠାରେ ଯୁକ୍ତି କରାଯାଉଛି- ଶିଳ୍ପାୟିତ ଓଡ଼ିଶାରେ ଓଡ଼ିଆଭାଷା ଓ ସଂସ୍କୃତିର ଗୌରବ ଓ ଗରିଷ୍ଠତା ଜାହିର ରଖିବା ପାଇଁ ଯେଉଁ ଅଣ-ଓଡ଼ିଆମାନେ ଓଡ଼ିଆ ମାଟିରେ ଲକ୍ଷ୍ମୀଙ୍କ ଆରାଧନା ପାଇଁ ଆସିବେ, ସେମାନେ ଓଡ଼ିଆ ସରସ୍ୱତୀଙ୍କ ଉପାସନା ନ କରିବେ କାହିଁକି ? କାହିଁକି ସେମାନେ ଗ୍ରହଣ ନ କରିବେ ଓଡ଼ିଆ ଭାଷା, ଓଡ଼ିଶୀ ନୃତ୍ୟ, ଓଡ଼ିଆଙ୍କ ପଖାଳ ଓ ପିତାଶାଗ ?

ଭାଷା ଓ ସଂସ୍କୃତି କିନ୍ତୁ ଏକ ଭାବପ୍ରବଣତାର ପ୍ରଶ୍ନ ନୁହେଁ । ଭାଷା ଓ ସଂସ୍କୃତିର ଛାତ୍ରମାନେ ଜାଣନ୍ତି, ଯେଉଁ ଦେଶ ବା ଗୋଷ୍ଠୀ ରାଜନୀତି ଓ ଅର୍ଥନୀତି କ୍ଷେତ୍ରରେ ନିଜକୁ ଯେତେ ପ୍ରତିଷ୍ଠିତ କରେ, ସେଇ ଦେଶ ଓ ଗୋଷ୍ଠୀର ଭାଷା ଓ ସଂସ୍କୃତିର ପ୍ରସାର ଓ ପ୍ରତିଷ୍ଠା ଘଟେ ସେତେ ବେଶୀ । କ୍ଷୁଦ୍ର ଇଂଲଣ୍ଡ ଦ୍ୱୀପଟିର ଭାଷା ଓ ସଂସ୍କୃତି ଆଜି ବିଶ୍ୱବ୍ୟାପୀ ହୋଇଉଠିଛି କେଉଁ କାରଣରୁ ?

ସଂଖ୍ୟାଗରିଷ୍ଠତା ତେଣୁ ନିଶ୍ଚିତ ଭାବରେ କୌଣସି ଭାଷା ଓ ସଂସ୍କୃତିର ପ୍ରଚାର ଓ ପ୍ରସାରର ନିୟାମକ ନୁହେଁ । ଉଦାହରଣ ନିଅନ୍ତୁ- ୱେଷ୍ଟ ଇଣ୍ଡିଜ ଦେଶ । ସେଠାରେ ସଂଖ୍ୟାଗରିଷ୍ଠ ବ୍ୟକ୍ତି ଆଫ୍ରିକା ମହାଦେଶରୁ ଆସିଛନ୍ତି । କିନ୍ତୁ ସେଠାରେ ଆଫ୍ରିକାର କୌଣସି ଭାଷା ଚଳେ ନାହିଁ, ଚଳେ ସଂଖ୍ୟାଲଘୁଙ୍କ ମାତୃଭାଷା ଇଂରାଜୀ । କାରଣ ଅତୀତରେ ଯେଉଁମାନେ ୱେଷ୍ଟ ଇଣ୍ଡିଜର ରାଜନୀତି ଓ ଅର୍ଥନୀତିକୁ ନିୟନ୍ତ୍ରଣ କରୁଥିଲେ, ସେମାନଙ୍କ ମାତୃଭାଷା ଥିଲା ଇଂରାଜୀ ।

ରାଉରକେଲାରେ ସଂଖ୍ୟାଗରିଷ୍ଠ ବ୍ୟକ୍ତି ଓଡ଼ିଆ ହୋଇପାରନ୍ତି, କିନ୍ତୁ ସେହି ପରିମାଣରେ ଓଡ଼ିଆଭାଷାର ପ୍ରଚଳନ ଓ ଆଧିପତ୍ୟ ମୁଁ ଲକ୍ଷ୍ୟକଲି ନାହିଁ । କାରଣଟି ଅର୍ଥନୀତିକ । ଇସ୍ପାତ କାରଖାନାର ବଡ଼ ବଡ଼ ପଦପଦବୀରେ ଶତକଡ଼ା ୮୦ ଅଣ-ଓଡ଼ିଆ । କଣ୍ଟ୍ରାକଟର ଠାରୁ ମୋଚି, ଭଣ୍ଡାରୀ, ରାସ୍ତାକଡ଼ର ଚା ଦୋକାନୀ, ଠେଲାଗାଡ଼ି ଟାଣିବା ଲୋକ ପର୍ଯ୍ୟନ୍ତ । ସମସ୍ତ ବ୍ୟବସାୟ-ବାଣିଜ୍ୟରେ ଅଣଓଡ଼ିଆଙ୍କ ଆଧିପତ୍ୟ । ଜଣେ ମୁଦ୍ରାକର ବନ୍ଧୁ କହିଲେ, ରାଉରକେଲାରେ ପ୍ରତିବର୍ଷ ଛପାହୁଏ ଦୁଇ କୋଟି ଟଙ୍କାର । ଚାଳିଶି ଲକ୍ଷ ଟଙ୍କାର ଛପା ହୁଏ ଓଡ଼ିଶାରେ । ଅବଶିଷ୍ଟାଂଶ କଲିକତାରେ । ରାଉରକେଲାର ଆବଶ୍ୟକତା ପୂରଣ ପାଇଁ ଓଡ଼ିଶାରେ ଛାପାଖାନା ନାହିଁ ଏ ଯାଏଁ । ରାଉରକେଲାର ସମୃଦ୍ଧି ଏହିପରି ପ୍ରବାହିତ ହୋଇଯାଏ ପଡ଼ୋଶୀ ରାଜ୍ୟକୁ ।

ଆଜିର ସଂସ୍କୃତି ଲୋକସଂସ୍କୃତି ନୁହେଁ, ପ୍ରାଚୁର୍ଯ୍ୟର ସଂସ୍କୃତି । ଚିତା ଓ ମାଣବସାକୁ ପଛରେ ପକାଇ ଆମେ ଟେଲିଭିଜନ ଯୁଗରେ ପହଞ୍ଚି ସାରିଚେ । ଏଇ ପରିବର୍ତ୍ତନ ଆମର ମତାମତକୁ ଅପେକ୍ଷା କରୁନାହିଁ; ଏଥିରୁ ଉଦ୍ଧାର ନାହିଁ –ଯେପରି ଉଦ୍ଧାର ନାହିଁ ଶିଳ୍ପାୟନ ଓ ଟେକ୍‌ନୋଲୋଜିରୁ ଏବଂ ଏଇ ପରିପ୍ରେକ୍ଷୀରେ ଓଡ଼ିଆ ଭାଷା ଓ ସଂସ୍କୃତିକୁ ମଜବୁତ କରି ନୂତନ ରୂପରେ ବଞ୍ଚାଇ ରଖିବାକୁ ହେଲେ ଓଡ଼ିଆମାନଙ୍କୁ ଓଡ଼ିଶାର ଅର୍ଥନୀତିକୁ ସଂପୂର୍ଣ୍ଣଭାବେ ଦଖଲ କରିବା ପାଇଁ ଯୋଗ୍ୟ ହେବାକୁ ହେବ । XXX

ରାଉରକେଲାରେ ମୁଁ ଓ ମୋର ଜଣେ ବନ୍ଧୁ ରହୁଥିଲୁ ଇସ୍ପାତ ହୋଟେଲରେ । କୁହୁଡ଼ିଆ ସକାଳରେ କେହି ଜଣେ କବାଟ ଖଟ ଖଟ କଲା । କବାଟ ଖୋଲିଲା-ବେଳକୁ ହୋଟେଲ୍ ବୟ । ପାଟି କରି ଉଠିଲେ ମୋର ବନ୍ଧୁ, 'ଚାୟ ଲାଓ ।'

ରାଉରକେଲା ଓଡ଼ିଶାରେ, ମୋର ବନ୍ଧୁ ଓ ହୋଟେଲ ବୟ ଉଭୟେ ଓଡ଼ିଆ । କିନ୍ତୁ ସ୍ୱାଭାବିକଭାବେ ହିନ୍ଦୀ ଉଚ୍ଚାରିତ ହେଲା କାହିଁକି ?

ଓଡ଼ିଶାରେ ଗଢ଼ିଉଠିଥିବା ବଡ଼ ବଡ଼ ସୁପର ମାର୍କେଟ, ହୋଟେଲ, ଗେଷ୍ଟ ହାଉସ୍, ବାରରେ ଓଡ଼ିଆମାନେ ପରସ୍ପର ମଧ୍ୟରେ କେବେ କେବେ ହିନ୍ଦୀରେ କଥାଭାଷା ହେବା ମୁଁ ବାରମ୍ବାର ଲକ୍ଷ୍ୟ କରୁଛି । ବୃହତ୍ ଶିଳ୍ପ-ବାଣିଜ୍ୟ ଯେଉଁମାନଙ୍କ ଦ୍ୱାରା ଅଧିକୃତ, ସେମାନଙ୍କ ଭାଷା ହିନ୍ଦୀ । ତେଣୁ ଅଣହିନ୍ଦୀ ଲୋକଙ୍କ ଉପରେ ମଧ୍ୟ ହିନ୍ଦୀ ଭାଷାର ଆଧିପତ୍ୟ । □

(୧୯୮୨)

# ଲେଡ଼ି ଠମ୍‌ସନ୍‌ଙ୍କ କଇଁଫୁଲ

ସ୍ୱଚ୍ଛ ଜଳପୂର୍ଣ୍ଣ ପୁଷ୍କରିଣୀରେ ଲାଲ ଟୁକ୍ ଟୁକ୍ କଇଁଫୁଲଟିଏ ଦେଖି ଆନନ୍ଦରେ ଚିତ୍କାର କରି ଉଠିଲେ ଲେଡ଼ି ଠମସନ୍, 'ଦେଖୁଚ ଡ଼ିଅର, କି ଚମତ୍କାର, କି ସୁନ୍ଦର ଦୃଶ୍ୟ ! ଅପୂର୍ବ !'

ସର୍‌ଜନ୍ ଠମ୍‌ସନ୍ ସ୍ତ୍ରୀଙ୍କ ଭଳି ଏତେ ପ୍ରଗଲ୍‌ଭ ନୁହନ୍ତି । ସେ ଅପେକ୍ଷାକୃତ ଗମ୍ଭୀର ଓ ସ୍ୱଳ୍ପଭାଷୀ । ଗୋଟିଏ ଶବ୍ଦରେ ସ୍ତ୍ରୀଙ୍କୁ ସମର୍ଥନ ଜଣାଇଲେ, 'ଠିକ୍ !'

ଢେ଼ଙ୍କାନାଳ ଜିଲ୍ଲାର କୌଣସି ଗୋଟିଏ ସ୍ଥାନ । ହସ୍ତଶିଳ୍ପରେ ପ୍ରଚଣ୍ଡ ଆଗ୍ରହ ହେତୁ ଲେଡ଼ି ଠମ୍‌ସନ୍ ବାହାରିଥାନ୍ତି ନବଜୀବନପୁରର ଲାଖ କାମ ଓ ନୂଆପାଟଣାର ଟସର କାମ ଦେଖିବାକୁ । ୧୯୭୯ ଫେବୃୟାରୀ ମାସର ଗୋଟିଏ ଉଜ୍ଜ୍ୱଳ ଦିନ । ଲ୍ୟାଣ୍ଡ୍‌ରୋଭର ଭିତରେ ଲେଡ଼ି ଠମ୍‌ସନ୍, ସର୍‌ଜନ୍ ଠମ୍‌ସନ୍, ଲଣ୍ଡନନିବାସୀ ଜଣେ ଭାରତୀୟ ଶିଳ୍ପୀ ଓ ମୁଁ । ଭାରତରେ ଇଂଲଣ୍ଡର ହାଇକମିଶନର ସର୍ ଜନ୍‌ଙ୍କର ଏହା ଥିଲା ବେସରକାରୀ ଗସ୍ତ । ଘଟଣାକ୍ରମେ ତାଙ୍କ ଗହଣରେ ଦିନଟି କଟାଇଥିଲି ମୁଁ ।

କଇଁଫୁଲଟି ପ୍ରତି ଲେଡ଼ି ଠମ୍‌ସନ୍‌ଙ୍କ ପ୍ରଚଣ୍ଡ ଆଗ୍ରହ ଦେଖି କହିଲେ ଭାରତୀୟ ଶିଳ୍ପୀ, 'ଆପଣ କଇଁଫୁଲଟି ନେବେ କି ?'

ତୁରନ୍ତ ଉତ୍ତରିଲେ ଲେଡ଼ି ଠମ୍‌ସନ୍, 'ପ୍ଲିଜ୍' ।

ଡ୍ରାଇଭର୍ ଲ୍ୟାଣ୍ଡ୍ ରୋଭର୍ ପଛକୁ ଗଡ଼ାଇଲା । ଭାରତୀୟ ଶିଳ୍ପୀଙ୍କ ପ୍ରସ୍ତାବ ଶୁଣି ମୁଁ ପ୍ରମାଦ ଗଣିଲି । ଦୂରରୁ ପୁଷ୍କରିଣୀରେ କଇଁଫୁଲଟି ଦେଖି ଆନନ୍ଦିତ ହେବା ଯେତିକି ସହଜ, ଗଭୀର ଜଳ ମଧ୍ୟରୁ ଫୁଲଟି ଉଦ୍ଧାର କରି ପ୍ରିୟଜନଙ୍କୁ ଉପହାର ଦେବା ସେତିକି ସହଜ ନୁହେଁ । ଜୀବନର ଅର୍ଦ୍ଧେକ ସମୟ ଇଂଲଣ୍ଡରେ କଟାଇ ଶିଳ୍ପୀବନ୍ଧୁ ନିଜ ଦେଶରେ ସମୟେ ସମୟେ ଅପରିଚିତଙ୍କ ଭଳି କଥା କହୁଥାନ୍ତି ।

ମୁଁ କହିଲି, 'କଇଁଫୁଲଟି ତୋଳିବା ଏତେ ସହଜ ନୁହେଁ । ତା'ଛଡା କଇଁଫୁଲ ନାଡ଼ରେ ସାପମାନେ ଗୁଡ଼େଇହୋଇ ରହିଥାନ୍ତି ବୋଲି ଶୁଣାଯାଏ ।'

ଲ୍ୟାଣ୍ଡ୍ ରୋଭର ଆଉ ପଛକୁ ଗଡ଼ିଲା ନାହିଁ । ସାପ ପ୍ରତି ଇଂରେଜମାନଙ୍କ ଭୟ ଶଇତାନ ପ୍ରତି ଭୟଠାରୁ ମଧ୍ୟ ଅଧିକ ।

ରାସ୍ତା ଦୁଇକଡ଼ର ଦୃଶ୍ୟ ଭାରତୀୟଙ୍କ ପାଇଁ ଏକାନ୍ତ ମାମୁଲି । ବିସ୍ତୃତ ଶସ୍ୟକ୍ଷେତ୍ର, କଦବା ନଦୀ, କେନାଲ, ପୁଷ୍କରିଣୀ, ପ୍ରକାଣ୍ଡ ପ୍ରକାଣ୍ଡ ଆମ୍ବ ବା ଅନ୍ୟ କେଉଁ ଛାୟାପ୍ରଦ ବୃକ୍ଷ, ମଝିରେ ମଝିରେ କ୍ଷୁଦ୍ର ପଲ୍ଲୀଟିଏ- ଦୁଇଧାଡ଼ି ଚାଳ ଘର, ମନ୍ଦିର, ଆପାତତଃ ଶାନ୍ତ, ନିରୀହ ଓ ଅନାସକ୍ତ ଦଳଦଳ ଦୁର୍ବଳ, ଅର୍ଦ୍ଧ ଉଲଗ୍ନ ପୁରୁଷ ଓ ନାରୀ । ଇଂରେଜମାନଙ୍କ ପରିଚିତ ଲ୍ୟାଣ୍ଡସ୍କେପ ଓ ଜନବସତିଠାରୁ ସମ୍ପୂର୍ଣ୍ଣ ଭିନ୍ନ ଏଇ ପୃଥିବୀ । ସ୍ୱାଭାବିକ ଭାବରେ ଉତ୍‌ଫୁଲ୍ଲ ହୋଇ ଉଠୁଥାନ୍ତି ଲେଡ଼ି ଠମ୍‌ସନ୍ ଓ ସର୍ ଜନ୍ । ଲେଡ଼ି ଠମ୍‌ସନ୍ ପ୍ରଗଳଭ, ସର୍ ଜନ୍ ନୀରବ-- କେବେ କିପରି ଦେଉଥାନ୍ତି ସଂକ୍ଷିପ୍ତ ମନ୍ତବ୍ୟ ।

ଛୋଟ ମନ୍ଦିରଟିଏ । ଲ୍ୟାଣ୍ଡରୋଭର ମଧ୍ୟରୁ ସ୍ପଷ୍ଟ ଦିଶୁଛନ୍ତି ରାଧା ଓ କୃଷ୍ଣଙ୍କ ପୁଷ୍ପଚନ୍ଦନମଣ୍ଡିତ ବିଗ୍ରହ । 'କି ଚମତ୍କାର', କହୁଥାନ୍ତି ଲେଡ଼ି ଠମ୍‌ସନ୍ ।

କୌଣସି ସ୍ଥାନରେ ତାଳବରଡ଼ା ନିର୍ମିତ ଘରଟି ସାମନାରେ ସାଇନ୍‌ବୋର୍ଡ଼- 'ଏଠାରେ କଣ୍ଢେଇନାଚ ହୁଏ ।' ଆନନ୍ଦରେ ଚିତ୍‌କାର କରି ଉଠିଲେ ଭାରତୀୟ ଶିଳ୍ପୀ । 'ଦେଖିଲେ ହୁଅନ୍ତା !' ଉଲ୍ଲସିତ ହୋଇ ଉଠିଲେ ଲେଡ଼ି ଠମ୍‌ସନ୍ । ସୌଭାଗ୍ୟକୁ କଣ୍ଢେଇନାଚ ହେବାକୁ ଅନେକ ବିଳମ୍ବ ଥିଲା । X X X

ଯେଉଁ ଶତ ଶତ ୟୁରୋପୀୟ ଭଦ୍ରବ୍ୟକ୍ତି, ଭଦ୍ରମହିଳା ଭାରତ ଭ୍ରମଣରେ ଆସନ୍ତି କିମ୍ବା ଭାରତୀୟ ଜୀବନ ଓ ସମସ୍ୟା ସମ୍ପର୍କରେ ଆଗ୍ରହୀ ହୁଅନ୍ତି, ସେମାନଙ୍କର ଅନୁଭୂତି ମୋଟାମୋଟି ଲେଡ଼ି ଠମ୍‌ସନ୍‌ଙ୍କ ଅନୁଭୂତି ଭଳି ହିଁ ହୋଇଥାଏ । ବିଗତ କେତେବର୍ଷ ହେଲା ବହୁ ବିଦେଶୀ ଓଡ଼ିଶା ପରିଦର୍ଶନରେ ଆସୁଥିବାର ଲକ୍ଷ୍ୟ କରାଯାଉଛି । ସେମାନଙ୍କ ମଧ୍ୟରୁ କେତେକଙ୍କ ବ୍ୟକ୍ତିଗତ ସଂସ୍ପର୍ଶରେ ଆସିଛି ମୁଁ । ହୋଟେଲ ପ୍ରାଚୀରେ ବ୍ରେକ୍‌ଫାଷ୍ଟ, ଉତାଜାହଜରେ ସ୍ୱର୍ଣ୍ଣ ତ୍ରିଭୁଜ ପରିକ୍ରମା, ପାଶ୍ଚାତ୍ୟ ରୀତିନୀତିକୁ ନିରର୍ଥକ ଅନୁକରଣ କରିଚାଲିଥିବା 'ଗାଇଡ୍'ର ସାହାଯ୍ୟ- ଏସବୁ ଭାରତୀୟ ଜୀବନ ଓ ବିଦେଶୀ ଟୁରିଷ୍ଟ ମଧ୍ୟରେ ସୃଷ୍ଟି କରେ କୃତ୍ରିମ ପ୍ରାଚୀର । ହୁଏତ ଟୁରିଷ୍ଟଟି ଲ୍ୟାଣ୍ଡ ରୋଭର ବା କାର୍ ଭିତରେ ଉଜ୍ଜ୍ୱଳ ସୂର୍ଯ୍ୟକିରଣରେ କଳା କଳା ମଣିଷଙ୍କ ଫୁଙ୍ଗୁଳା ଦେହ ଓ ମାଇଲ ମାଇଲ ଶସ୍ୟକ୍ଷେତ୍ର ଦେଖି ଚିତ୍କାର କରିଉଠେ 'ଅପୂର୍ବ', 'ଚମତ୍କାର', 'ଅଦ୍ଭୁତ' କିମ୍ବା ନିଜକୁ ଖୁବ୍ ବୁଦ୍ଧିମାନ ଓ ବିଜ୍ଞ ମନେକରୁଥିବା, ପ୍ରଚଣ୍ଡ ଗ୍ରୀଷ୍ମକାଳରେ ସୁଟ୍‌ଟିଏ ମଡ଼େଇଥିବା ଗାଇଡ଼ଠାରୁ ବୁଝେ- ଭାରତୀୟମାନେ ଅତି ଦରିଦ୍ର, ଆଳସ୍ୟପରାୟଣ, ଦୁର୍ନୀତିଗ୍ରସ୍ତ । ଭାରତର ଧର୍ମ ଓ ଆଧ୍ୟାତ୍ମିକତା ଏକ ଭଣ୍ଡାମି, ଇତ୍ୟାଦି... । ମାତ୍ର ଅଳ୍ପ କେତେ ସପ୍ତାହ ତଳେ

ଭୁବନେଶ୍ୱର ଏୟାରପୋର୍ଟରେ ଜଣେ ଇଂରେଜ ମହିଳାଙ୍କୁ ଜଣେ ଭାରତୀୟ ଗାଇଡ୍ ଭାରତର ସାଧୁସନ୍ଥମାନେ କିଭଳି ଜଣେ ଜଣେ ଦସ୍ୟୁ, ତାହା ପ୍ରାଞ୍ଜଳ ଭାବେ ବୁଝାଉଥିବାର ମୁଁ ଶୁଣିଥିଲି । ଇଂରେଜ ମହିଳା ଯେ ତାହା ବିଶ୍ୱାସ କରିଥିବେ, ଏହା ଅକ୍ଲେଶରେ କୁହାଯାଇପାରେ ।

ଏକଥା ସତ, ଜଣେ ୟୁରୋପୀୟ ପକ୍ଷରେ ଭାରତକୁ ବୁଝିବା କିମ୍ବା ଜଣେ ଭାରତୀୟ ପକ୍ଷରେ ୟୁରୋପକୁ ବୁଝିବା ଆଦୌ ସହଜ ନୁହେଁ । ଭାରତ ଓ ୟୁରୋପର ଇତିହାସ, ଧର୍ମ, ପରମ୍ପରା ଓ ଜଳବାୟୁ ପରସ୍ପରଠାରୁ ଭିନ୍ନ । ସେଇଥିପାଇଁ ୟୁରୋପୀୟମାନେ ଭାରତକୁ ଏକ 'ବିଚିତ୍ର' (exotic) ଦେଶ ବୋଲି ମନେକରନ୍ତି । ଭାରତୀୟମାନେ ସେହିପରି ମନେକରନ୍ତି, ଯାହା କିଛି ୟୁରୋପୀୟ, ତାହା ହିଁ ସେମାନଙ୍କ ଆଦର୍ଶ । ୟୁରୋପୀୟମାନେ ଭାରତ ସମ୍ପର୍କରେ ତଥା ଭାରତୀୟମାନେ ୟୁରୋପ ସମ୍ପର୍କରେ ବହୁ ସାହିତ୍ୟ ସୃଷ୍ଟି କରିଥିଲେ ହେଁ ଏଇ ଦୁଇ ସଭ୍ୟତା ମଧ୍ୟରେ ଯଥାର୍ଥ ବୁଝାମଣା ଓ ବନ୍ଧୁତା ଏଯାବତ ପ୍ରତିଷ୍ଠିତ ହୋଇପାରି ନାହିଁ ।

ଆଜି ଭାରତ ତଥା ଓଡ଼ିଶାର ପର୍ଯ୍ୟଟନ ଶିଳ୍ପର ବିକାଶ ଲାଗି ବହୁ ଉଦ୍ୟମ ଚାଲିଥିବାବେଳେ ବିଦେଶୀ ଟୁରିଷ୍ଟମାନେ ଯେଭଳି ଭାରତ ସମ୍ପର୍କରେ ଠିକ୍ ଧାରଣା କରିପାରିବେ, ସେଥିପାଇଁ ଦୃଷ୍ଟି ଦିଆଯିବା ଉଚିତ । ଯେଉଁ ବିଦେଶୀମାନେ ଭାରତର ପ୍ରକୃତ ପରିଚୟ ପାଇବାରେ ଆଗ୍ରହୀ, ସେମାନେ ଲ୍ୟାଣ୍ଡ୍‌ରୋଭ୍‌ର ଛାଡ଼ି ଶଗଡ଼ରେ କିମ୍ବା ପାଦରେ ଗାଁଆର ମାଟିକାଦୁଅ ରାସ୍ତାରେ ଚାଲିବାକୁ ପ୍ରସ୍ତୁତ ରହିବା ଆବଶ୍ୟକ । ରୋମ୍‌ରେ ରୋମାନମାନଙ୍କ ଭଳି ରହିବା ଉଚିତ ବୋଲି ଇଂରାଜୀରେ ପ୍ରବଚନଟିଏ ପ୍ରଚଳିତ ଅଛି । ଭାରତରେ ଠିକ୍ ସେହିପରି ଭାରତୀୟଙ୍କ ଭଳି ଚଳିବା ଆବଶ୍ୟକ । ଲ୍ୟାଣ୍ଡରୋଭର ଭିତରୁ କଇଁଫୁଲଟି ଯେପରି ଦିଶେ, ପଙ୍କରେ ପଶି ଗଭୀର ଜଳଭିତରୁ ଫୁଲଟି ତୋଳି ଆଣିଲା ପରେ ଫୁଲଟି ହୁଏତ ସେହିପରି ଦିଶେନାହିଁ !!□

(୧୯୮୨)

# ହାସିମ୍ ମଞ୍ଜିଲ୍: ଏକ ସ୍ମରଣୀୟ ସନ୍ଧ୍ୟା

ପନ୍ଦର ବର୍ଷ ତଳେ କେତୋଟି ମାସ କଟାଇଥିଲି ଓଡ଼ିଶାର ଏକ କ୍ଷୁଦ୍ର ସହରରେ ଏବଂ ଏକଦା ସାନ୍ଧ୍ୟ ଭ୍ରମଣ କାଳରେ ଲକ୍ଷ୍ୟ କରିଥିଲି- ସହରର ଏକ ନୀରବ ଅଞ୍ଚଳରେ ଧାଡ଼ିଏ ପରିତ୍ୟକ୍ତ ଭଙ୍ଗା କୋଠାଘର। କୋଠାଘରଗୁଡ଼ିକ ଆଭିଜାତ୍ୟସମ୍ପନ୍ନ; ସମ୍ମୁଖରେ ତଥାପି ଅକ୍ଷତ ଆରବିକ ବା ଉର୍ଦ୍ଦୁ ଭାଷାର ନାମଫଳକ। ଆପାତତଃ ଏହି କୋଠାଘରଗୁଡ଼ିକର ଏକଦା ମାଲିକ ଥିଲେ କେତୋଟି ସମ୍ଭ୍ରାନ୍ତ ମୁସଲମାନ ପରିବାର।

କୋଠାଘରଗୁଡ଼ିକ ଦେଖି ମନେହୋଇଥିଲା- ମୁସଲମାନ ରାଜତ୍ୱର କୌଣସି ସମୟରେ ଏଇଠାରେ ଗଢ଼ିଉଠିଥିଲା ପ୍ରତିପତ୍ତିଶାଳୀଙ୍କ କଲୋନୀ। ଐତିହାସିକମାନଙ୍କ ଦୃଷ୍ଟି ତଥାପି ଏଇ ଅଞ୍ଚଳ ପ୍ରତି ଆକୃଷ୍ଟ ହେବାକୁ ବିଳମ୍ବ ଥିଲା।

ପନ୍ଦର ବର୍ଷ ପରେ ପୁଣିଥରେ ବାହାରିଲି ସେହି ଭଙ୍ଗାଘରଗୁଡ଼ିକର ସନ୍ଧାନରେ। ସାଙ୍ଗରେ ତିନିଜଣ ତରୁଣ-ବନ୍ଧୁ। ସମୟ ସନ୍ଧ୍ୟା। ମେଘ ଆଗତପ୍ରାୟ।

ପରିଚିତ ସହରଟିର ମାନଚିତ୍ର ଏହା ମଧ୍ୟରେ କେତେକାଂଶରେ ବିସ୍ମୃତ ହୋଇ ଆସିଥିଲା। ମାତ୍ର ଅବିଳମ୍ବେ ଆମେ ପହଞ୍ଚିଗଲୁ ଏକ ପୁରୁଣା କୋଠାଘର ସାମ୍ନାରେ। ଉର୍ଦ୍ଦୁ ଓ ଇଂରାଜୀର ନାମଫଳକ ଘୋଷଣା କରୁଛି– 'ହାସିମ୍ ମଞ୍ଜିଲ। ସ୍ଥାପିତ ୧୯୫୦'। କୋଠାଘର ସାମ୍ନାରେ ହିଁ ଠିଆ ହୋଇଛନ୍ତି ମାଲିକ– ଜଣେ ମୁସଲମାନ ବୃଦ୍ଧ, ପରିଧାନ ଲୁଙ୍ଗି ଓ ଫୁଲ୍‌ସାର୍ଟ୍, ଦାଢ଼ିର ରଙ୍ଗ ଧଳା। ପଚାରିଲୁ– 'ଏ କ'ଣ ଆପଣଙ୍କର ଘର ? କେତେ ପୁରୁଣା ଏ ଘର ?' 'ଆପଣମାନେ କିଏ ?' ବୃଦ୍ଧଙ୍କ ଓଲଟ ପ୍ରଶ୍ନ।

ଆମେ ନିଜ ନିଜର ପରିଚୟ ଦେଲୁ। ତଥାପି ବୃଦ୍ଧଙ୍କ ସନ୍ଦେହ– 'ଆଜିକାଲି କାହାରିକୁ ବିଶ୍ୱାସ କରିବା ସହଜ ନୁହେଁ। ଆପଣମାନେ ସି.ବି.ଆଇ. ଏଜେଣ୍ଟ୍ ହୋଇପାରନ୍ତି !'

'ଏଇ ଅଞ୍ଚଳରେ ଐତିହାସିକ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ କୋଠାଘର ଧାଡ଼ିଏ ଅଛି ବୋଲି ଆମେ ଜାଣୁ। ତାହାରି ସନ୍ଧାନରେ ଆସିଛୁ।' ଆମେ ବୃଦ୍ଧଙ୍କୁ ବୁଝାଇଲୁ।

ସନ୍ଦେହ ବୃଦ୍ଧଙ୍କୁ ଛାଡ଼ିଲା ନାହିଁ । ତଥାପି ଅଧା ଇଂରାଜୀ ଅଧା ଓଡ଼ିଆରେ ସେ ଆମ ପ୍ରଶ୍ନର ଉତ୍ତର ଦେଲେ– ଅଳ୍ପ କେତେବର୍ଷ ତଳେ ଜଣେ ଆଙ୍ଗ୍‌ଲୋ ଇଣ୍ଡିଆନଙ୍କଠାରୁ ସେ ଏହି କୋଠାଘରଟି କିଣିଛନ୍ତି । ବେଶ୍ କିଛି ମରାମତି ପରେ ଏହା ବାସଯୋଗ୍ୟ ହୋଇପାରିଛି । ଅନ୍ୟ ପୁରୁଣା କୋଠାଘରଗୁଡ଼ିକର ଅବସ୍ଥିତି ସମ୍ପର୍କରେ ସେ କିଛି ଜାଣନ୍ତି ନାହିଁ ।

ଏବଂ ଆମକୁ ସେ ନିମନ୍ତ୍ରଣ କଲେ ତାଙ୍କ କୋଠି ମଧ୍ୟକୁ । ପ୍ରକାଣ୍ଡ ବଗିଚା । ଘର ସାମନାରେ ଦୁଇଟି କ୍ଷୁଦ୍ର ଖଜୁରୀ ଜାତୀୟ ବୃକ୍ଷ । କୋଠାଗୁଡ଼ିକରେ ମଳିନ ବିଦ୍ୟୁତ୍ ଆଲୋକ । ଚାରିଆଡ଼େ କିପରି ଗୋଟାଏ ରହସ୍ୟମୟ ନିର୍ଜନତାର ପରିବେଶ । କୌଣସି କୋଠରୀରେ ନାରୀ ମୂର୍ତ୍ତିଟିଏ ଆବିର୍ଭୂତ ହୋଇ ମୁହୂର୍ତ୍ତକେ ଅଦୃଶ୍ୟ ହୋଇଗଲା ।

‘ବଡ଼େମିଆଁ’, ଡାକିଲେ ବୃଦ୍ଧ, ‘ସାହେବମାନଙ୍କ ପାଇଁ ଚା’ ଆଣ । ଆଜିକାଲି ଚା’ର ଦାମ କେତେ ମହଙ୍ଗା ତୁ ଜାଣୁ । ଅଧା କପ ଲେଖାଏଁ ଚା’ ଆଣିବୁ ।’ ଉର୍ଦ୍ଦୁରେ ବୃଦ୍ଧଙ୍କ ପରିହାସମିଶା ଆଦେଶ ।

ବାହାରେ ବର୍ଷା ଆରମ୍ଭ ହୋଇଗଲା । ଆମର ଆଲୋଚନା ପାରିବାରିକ ସୁଖଦୁଃଖଠାରୁ ଆରମ୍ଭ ହୋଇ ଗଣେଶ ପୂଜାରେ ସିନେମା ସଙ୍ଗୀତର କାନଅତଡ଼ା, ପାକିସ୍ତାନ ସମସ୍ୟା ଯାଏଁ ଗଡ଼ିଚାଲିଲା ।

ବୃଦ୍ଧଙ୍କଠାରୁ ଜାଣିଲୁ, ତାଙ୍କର ଦୁଇ ପୁଅ ସାଉଦି ଆରବରେ ଚାକିରୀ କରନ୍ତି । ଜଣେ ଭଣଜା ପାକିସ୍ତାନ ସମ୍ପର୍କରେ ଗବେଷକ । ପତ୍ରପତ୍ରିକାରେ ତାଙ୍କର ବହୁଲେଖା ପ୍ରକାଶିତ । ବୃଦ୍ଧ ନିଜେ ବ୍ୟବସାୟ କରନ୍ତି ।

ବଡ଼େମିଆଁର ନିଶ ନାହିଁ, ଦାଢ଼ି ବିପୁଳ । ମୋଟା ଗେଡ଼ା ଲୋକ, ଅଯଥା ଗମ୍ଭୀର । ଚା ଆଣି ଦେଲା ।

‘କାଶ୍ମୀର ସମସ୍ୟା ସମ୍ପର୍କରେ ଆପଣଙ୍କ ମତ କ’ଣ ? କ’ଣ ଏହାର ସମାଧାନ ?’ ବୃଦ୍ଧଙ୍କ ସିରିୟସ୍ ପ୍ରଶ୍ନ ।

କେହି ଯେପରି ପ୍ରସ୍ତୁତ ନ ଥିଲେ ଏ ପ୍ରଶ୍ନର ଉତ୍ତର ଦେବାକୁ ! ବୃଦ୍ଧ କି ଉତ୍ତର ଆଶା କରିଛନ୍ତି କେଜାଣି ! କହିଲେ ଜଣେ ତରୁଣ ବନ୍ଧୁ, ‘ପ୍ଲେବିସାଇଟ୍ । କାଶ୍ମୀର ଲୋକଙ୍କ ମତ ନିଆଯାଉ ।’

'ସେଥିରେ କ'ଣ ଭାରତ ସରକାର ରାଜି ହେବେ ?' ବୃଦ୍ଧଙ୍କ ପ୍ରଶ୍ନ ଓ ଅବିଳମ୍ବେ ତାଙ୍କର ସମାଧାନ, 'ବରଂ ବର୍ତ୍ତମାନର ଯୁଦ୍ଧ ବନ୍ଦ ସୀମାରେଖା ଉଭୟପକ୍ଷ ମାନିନେବା ଭଲ । ଇନ୍ଦିରାଗାନ୍ଧୀ ଓ ଭୁଟ୍ଟୋଙ୍କ ମଧ୍ୟରେ କୁଆଡ଼େ ସେଇଆ ବୁଝାମଣା ହୋଇଥିଲା ।'

'କେହି ଧୂଆଁ ଖାଇବେ ?' ବୃଦ୍ଧଙ୍କ ଆତିଥେୟତା । ଆମେ ନାସ୍ତି କଲୁ । ବର୍ଷାର ପ୍ରକୋପ ଅନେକାଂଶରେ ହ୍ରାସ ପାଇଛି ।

'ମୋର ଟିକିଏ ଧୂଆଁ ଖାଇବାକୁ ଇଚ୍ଛା ହେଉଛି । ବଡ଼େମିଆଁ.. ।'

ବୃଦ୍ଧ ବିଡ଼ିରେ ନିଆଁ ଲଗାଇଲେ । ଆମେ ଉଠିଲୁ । ସେ ଆମକୁ ବଳେଇ ଦେବାକୁ ଆସିଲେ ଗେଟ୍‌ଯାଏଁ ।

ଆମକୁ ଅବଶ୍ୟ ସେ ତାଙ୍କ ନାମଟି କହିଥିଲେ । କିନ୍ତୁ କୌଣସି କାରଣରୁ ସ୍ୱୀୟ ନାମଟି ଘୋଷଣା କରିବା ପାଇଁ ସେ ଥିଲେ କୁଣ୍ଠିତ । ଏଇ ଲେଖାରେ ତେଣୁ ତାଙ୍କ ନାମଟି ଗୋପନ ରଖାଯିବା ହିଁ ଯଥାର୍ଥ । ❑

(୧୯୮୩)

# ଶିଳ୍ପୀମାନଙ୍କ ଗାଁ

ସେ ଗାଁଆରେ ପ୍ରାୟ ସମସ୍ତେ ଶିଳ୍ପୀ, ଅଧିକାଂଶ ପଟଚିତ୍ର କରନ୍ତି, ଅନ୍ୟମାନେ କାଠରେ ତିଆରି କରନ୍ତି ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ମୂର୍ତ୍ତି, ଘୋଡ଼ା, ହାତୀ, ସିଂହ କିମ୍ବା ମୋଟା କାଗଜରେ ତିଆରି କରନ୍ତି ବିଭିନ୍ନ ଆକାରର ମୁଖା-ଦେବତା ଏବଂ ପଶୁପକ୍ଷୀମାନଙ୍କର ।

ପୁରୀଜିଲ୍ଲାର ସାକ୍ଷୀଗୋପାଳ ନିକଟସ୍ଥ ଚନ୍ଦନପୁରଠାରୁ ଅଳ୍ପ ଦୂରରେ ସେ ଗାଁ– ରଘୁରାଜପୁର । ଚାଲିଗଲେ ପାଞ୍ଚମିନିଟ୍‌ର ବାଟ, ଜିପ୍‌ରେ ଗାଁ ମୁଣ୍ଡଯାଏଁ ଯାଇହେବ । କିନ୍ତୁ ରାସ୍ତାର ଅବସ୍ଥା ଦୃଷ୍ଟିରୁ ଜିପ୍‌ରେ ଯିବା ନିରାପଦ ନୁହେଁ । ଓଡ଼ିଶା ସରକାରଙ୍କ ଶିଳ୍ପ ବିଭାଗର ଜଣେ ଅଫିସର ବନ୍ଧୁଙ୍କ ସଙ୍ଗେ ଜିପ୍‌ରେ ସେ ଗାଁଆକୁ ଗଲାବେଳେ ମୋର ମନେ ହେଉଥିଲା, ଜିପ୍‌ଟି ଯେକୌଣସି ମୁହୂର୍ତ୍ତରେ ଓଲଟି ପଡ଼ିବ । କିନ୍ତୁ ଅଭିଜ୍ଞ ସରକାରୀ ଡ୍ରାଇଭର କହିଲା– ସେ ଅନେକଥର ଜିପ୍‌ରେ ଗାଁଆକୁ ଯାଇଚି, ଭୟର କାରଣ ନାହିଁ ।

ସେ ଗାଁଆରେ ପହଞ୍ଚିଲା ବେଳକୁ ଦିନ ପ୍ରାୟ ଗୋଟାଏ । ଆମେ ସିଧା ଗଲୁ କଳାଜିତ୍ ଭବନକୁ– ରଘୁରାଜପୁରର ଶିଳ୍ପୀମାନଙ୍କ ସମବାୟ ସମିତି ଗୃହକୁ । କୌଣସି ଶିଳ୍ପୀଙ୍କ ଦାଣ୍ଡଘର ପରି ମନେ ହେଉଥିବା ସେ କୋଠରୀଟି ବେଶ୍ ପ୍ରଶସ୍ତ । ସିମେଣ୍ଟ ଚଟାଣ ଓ ଚୂନକାନ୍ଥ । କାନ୍ଥରେ ଝୁଲୁଥିବା କେନ୍ଦ୍ର ବା ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରଦତ୍ତ ପ୍ରଶଂସା ପତ୍ର, ରାଷ୍ଟ୍ରପତିଙ୍କ ନିକଟରେ କୌଣସି କୌଣସି ଶିଳ୍ପୀଙ୍କ ଉପସ୍ଥିତିର ଫଟୋଗ୍ରାଫ୍‌ରୁ ଆପାତତଃ ରଘୁରାଜପୁରର ଶିଳ୍ପୀମାନଙ୍କ ଗୌରବ ଓ ସ୍ୱୀକୃତିର ସୂଚନା ମିଳୁଥିଲା । ଦେହରେ ଚନ୍ଦନ ବୋଳିହୋଇ ମୋ ନିକଟରେ ବସିଥିବା କ୍ଷୀଣକାୟ ବୁଢ଼ା ଜଣେ କହିଲେ, 'ଅନେକ ଲୋକ ଆମ ଗାଁଆକୁ ଆସନ୍ତି । ବେଳେ ବେଳେ ଦଳ ଦଳ ହୋଇ ଗୋରାଲୋକ ପହଞ୍ଚଯାନ୍ତି ।' (ଚନ୍ଦନପୁରରୁ ରଘୁରାଜପୁର ରାସ୍ତାଟି ସମ୍ପର୍କରେ ସେମାନେ କ'ଣ ଭାବୁଥିବେ ?)

ଅଳ୍ପ ସମୟ ପରେ ଆମକୁ ଘେରି ଜମିଗଲେ ଅନେକ ଶିଳ୍ପୀ ଓ ବିଭିନ୍ନ ବୟସର ଦେଖଣାହାରୀ । ଗାଢ଼ ସମ୍ବଲପୁରୀ ଲୁଙ୍ଗୀ, ନାଲି ଗାମୁଛା ଓ ଫୁଙ୍ଗୁଳା ଦେହର ଗୋଟି ବ୍ୟୁହ ଭିତରେ ଆମେ ବସିରହିଲୁ । କଳାଜିତ୍ ଭବନର ଏଠି ସେଠି ପଡ଼ିଥିଲା ସମାପ୍ତ, ଅସମାପ୍ତ ଅନେକ ପଟଚିତ୍ର । ଷଢ଼େଇର ବିଭିନ୍ନ ରଙ୍ଗ ଓ

ବାଉଁଶ ନଳୀରେ ଅସଂଖ୍ୟ ତୁଳୀ । କେତୋଟି ବଡ଼ ବଡ଼ ଚିତ୍ରପଟ ଗୁଡ଼ିଆହୋଇ ଛାତରୁ ଝୁଲୁଥିଲା । କାନ୍ଥରେ ଦୁଇଟା କ୍ୟାଲେଣ୍ଡର –Indian Metals and Ferro Alloys Ltd. ରଘୁରାଜପୁରର ଶିଳ୍ପୀମାନଙ୍କ ଦ୍ୱାରା ଅଙ୍କିତ ଦଶାବତାର ଓ ଜଗନ୍ନାଥଙ୍କ ବିଭିନ୍ନ ବେଶର ଛବିକୁ ଏଥିରେ ସ୍ଥାନ ଦେଇଛି । ଚଟାଣରେ ପଡ଼ି ରହିଥିଲା ଖଣ୍ଡିଏ 'ମଧୁବଣୀ' ଛବି–ବିହାରର ଏଇ ଚିତ୍ରଶିଳ୍ପ କଲିକତାର କାଳୀଘାଟ ପଟଚିତ୍ର ପରି ଭାରତରେ ବିଖ୍ୟାତ ହୋଇସାରିଛି ।

ଶିଳ୍ପୀମାନଙ୍କ ସହିତ କଥାବାର୍ତ୍ତାରୁ ମନେ ହେଉଥିଲା, ସରକାରୀ ଓ ସହରର ଭଦ୍ରଲୋକମାନଙ୍କ ସହିତ ମିଳାମିଶାରେ ସେମାନେ ଅଭ୍ୟସ୍ତ । ସେମାନଙ୍କ ଆର୍ଥିକ ଅବସ୍ଥା ଅସ୍ୱଚ୍ଛଳ ନୁହେଁ । କେବଳ ପାରମ୍ପାରିକ ରୀତିରେ ଚିତ୍ର ନ ଆଙ୍କି ନୂତନ ବିଷୟବସ୍ତୁ, ନୂତନ ଆଙ୍ଗିକରେ ଚିତ୍ର ଅଙ୍କନ କରିବା ପାଇଁ ସେମାନେ ମୋଟାମୋଟି ପ୍ରସ୍ତୁତ ।

ଆମ ପ୍ରଶ୍ନର ଉତ୍ତରରେ ସେମାନେ କହିଲେ, ମୋଟାକନା ଉପରେ ଏକ ନିର୍ଦ୍ଦିଷ୍ଟ ଅନୁପାତରେ କଇଁଆ ଗୁଣ୍ଡ ଓ ଖଡ଼ି ବୋଳି ସେମାନେ ପଟ ପ୍ରସ୍ତୁତ କରନ୍ତି । କଇଁଆ ଗୁଣ୍ଡକୁ ଖିରୀପରି ଆଉଟାଯାଇ ଏକ ମଣ୍ଡ ପ୍ରସ୍ତୁତ କରାଯାଏ । ସେଥିରେ ଖଡ଼ି ମିଶାଯାଇ କନା ଉପରେ ବୋଳାହୁଏ । କନାକୁ ସାବଧାନତାର ସହିତ ମସୃଣ କଲାପରେ ତା ଉପରେ ଚିତ୍ର ଅଙ୍କାଯାଏ । ଚିତ୍ର ଅଙ୍କିତ ହେଲାପରେ 'ଲାକରିଂ' ହୁଏ ଅର୍ଥାତ୍ ଗରମ ତରଳା ଲାଖରେ ଚିତ୍ରକୁ ପୋଛି ଦିଆଯାଏ । ଏହା ଫଳରେ ଚିତ୍ରଟି ଚିକ ଚିକ୍ ଦିଶେ ଏବଂ ତାହାର ରଙ୍ଗ ସହଜରେ ଛାଡ଼ି ଯାଏନାହିଁ ।

କଳାଜିତ୍ ଭବନରେ ଓ ଅନ୍ୟ ଶିଳ୍ପୀମାନଙ୍କ ନିକଟରେ ଥିବା ପଟଚିତ୍ରଗୁଡ଼ିକ ଦେଖି ସ୍ପଷ୍ଟ ହେଲା, ଶିଳ୍ପୀମାନଙ୍କ ପ୍ରେରଣାର ପ୍ରଧାନ ଉତ୍ସ ଜଗନ୍ନାଥ ଓ ଜଗନ୍ନାଥ ମନ୍ଦିର । ଜଗନ୍ନାଥଙ୍କ ବିଭିନ୍ନବେଶ ଓ ଶ୍ରୀମନ୍ଦିରର ବିଭିନ୍ନ ଦେବଦେବୀଙ୍କ ଛବି ହିଁ ସେମାନଙ୍କ ମୁଖ୍ୟ ବିଷୟବସ୍ତୁ । କୃଷ୍ଣଲୀଳା ଓ ରାମଲୀଳା ସେମାନଙ୍କ ଚିତ୍ରକଳାର ଅନ୍ୟ ଦୁଇଟି ବିଭାବ । ଗଣେଶ, ଦୁର୍ଗା ଓ ଶିବଙ୍କ ଛବି ଅଙ୍କନରେ ସେମାନେ ଅଭ୍ୟସ୍ତ ।

କେତେଜଣ ଶିଳ୍ପୀଙ୍କ ଘରକୁ ଯାଇ ସେମାନଙ୍କ ଚିତ୍ରସବୁ ଦେଖିଲା ପରେ ଜଣାଗଲା, ସମବାୟ ସମିତି ବାହାରେ ମଧ୍ୟ ପ୍ରତିଭାବାନ୍ ଶିଳ୍ପୀଙ୍କର ଅଭାବ ନାହିଁ । ସମବାୟ ସମିତି ସମସ୍ତ ଶିଳ୍ପୀଙ୍କର ପ୍ରତିନିଧିତ୍ୱ କରୁଛି ବୋଲି ମନେକରିବା ଠିକ୍

ନୁହେଁ । 'ସମିତିଟି ଭାଙ୍ଗିଗଲେ ଶିଳ୍ପୀମାନଙ୍କର ଅଧିକ ମଙ୍ଗଳ ହୁଅନ୍ତା' ବୋଲି ମତ ଦେଉଥିବା ତରୁଣ ଶିଳ୍ପୀ ଭିକାରୀ ମହାରଣାଙ୍କ ବିଷୟବସ୍ତୁ ପାରମ୍ପାରିକ ହେଲେ ହେଁ ତାଙ୍କ ରଙ୍ଗ ବିନ୍ୟାସରେ କିଛି ମୌଳିକତା ମୁଁ ଲକ୍ଷ୍ୟ କଲି । ରଘୁରାଜପୁରର ପ୍ରତିଷ୍ଠିତ ଶିଳ୍ପୀ, ଓଡ଼ିଶା ଓ ଭାରତ ସରକାରଙ୍କ ଦ୍ୱାରା ପୁରସ୍କୃତ ଶ୍ରୀ ଉତ୍ସବ ମହାରଣା, ଶ୍ରୀ ଅନନ୍ତ ମହାରଣା ପ୍ରଭୃତିଙ୍କ ପରେ ଶ୍ରୀ ଭିକାରୀ ମହାରଣା ପ୍ରଭୃତି ସେମାନଙ୍କ ଗ୍ରାମର ଅମୂଲ୍ୟ ପରମ୍ପରା ବଞ୍ଚାଇ ରଖିବେ ବୋଲି ଆଶା କରିବା ସ୍ୱାଭାବିକ ।

ରଘୁରାଜପୁର ଏକ ଶାନ୍ତ କ୍ଷୁଦ୍ରଗ୍ରାମ । ମଧ୍ୟାହ୍ନରେ ଆମେ ଶିଳ୍ପୀମାନଙ୍କ ଘର ଘର ବୁଲୁଥିବା ବେଳେ ହଠାତ୍ ଗାଁଆରେ କିଛି ଉତ୍ତେଜନା ଦେଖାଗଲା । କେହି ଜଣେ ହାତରେ ନେଳି ରଙ୍ଗର ମାଟିପାତ୍ର ଧରି ଅସ୍ପଷ୍ଟ ସ୍ୱରରେ କ'ଣସବୁ କହି କହି ଦ୍ରୁତ ଗତିରେ ଗ୍ରାମର ରାସ୍ତାରେ ଚାଲୁଥିବା ଆମେ ଦେଖିଲୁ । ସେ ଚାଲୁଥିବାବେଳେ ତା' ଆଣ୍ଠୁରେ ବନ୍ଧା ହୋଇଥିବା ଘଣ୍ଟିଟା ବାଜୁଥାଏ । ସେ ଲୋକଟି ନିଜେ କାହାକୁ କିଛି ମାଗୁନଥାଏ, କିନ୍ତୁ ଘର ଭିତରୁ ବାହାରି ଆସି ସ୍ତ୍ରୀ ଲୋକମାନେ ତାକୁ ଭିକ୍ଷା ଦେଉଥାନ୍ତି । ମୁଁ ଆଗରୁ କେବେ ଏପରି ଚରିତ୍ର ଦେଖିନଥିଲି । ଗାଁଆର ଲୋକେ ଆମକୁ ବୁଝାଇଦେଲେ, 'ଏ ହେଉଛି ଜାନୁଘଣ୍ଟ ପର୍ଶୁରାମ ।'

ସମବାୟ ସମିତିର ସଭ୍ୟ ଶିଳ୍ପୀମାନେ ସମିତି ଗୃହରେ ପାରିବାରିକ ଜଞ୍ଜାଳଠାରୁ ଦୂରରେ ରହି କାମ କରନ୍ତି । କିନ୍ତୁ ଅନେକେ ସେମାନଙ୍କ ସଂକୀର୍ଣ୍ଣ ଅନ୍ଧାରୁଆ ଘର ଭିତରେ ହିଁ କାମ କରୁଥିବା ଆମେ ଦେଖିଲୁ । କେହି କେହି ସେମାନଙ୍କ ଦାଣ୍ଡପିଣ୍ଡା ଉପରେ ବସି ଲାକରିଂ କରୁଥିଲେ । ଜଣେ ଶିଳ୍ପୀ ଗୋଟିଏ ବେତାରେ ଜଗନ୍ନାଥଙ୍କ ମୂର୍ତ୍ତିସବୁ ରଖିଥିଲେ । ସେ ବେତାଟି ଯେଉଁ ଅନ୍ଧାରୁଆ କୋଣରେ ରଖା ଯାଇଥିଲା, ସେଠାରେ ଶେଯ ଉପରେ ଦୁଇତିନି ବର୍ଷର ଶିଶୁଟିଏ ଶୋଇଥିଲା । ଅନେକଙ୍କ ଦାଣ୍ଡଘରେ ମେଞ୍ଚା ମେଞ୍ଚା ପଟଚିତ୍ର ଆପାତତଃ ଅନାବଶ୍ୟକ ଉପକରଣ ଭଳି ରଖାଯାଇଥିଲା । ସେଥିରୁ କୌଣସି କୌଣସିଟିର ଠାଏ ଠାଏ ରଙ୍ଗ ଛାଡ଼ି ଯାଇଥିଲା ବା କୋଣରୁ ଛିଣ୍ଡି ଯାଇଥିଲା ।

ଯେଉଁମାନେ କାଠକାମ କରନ୍ତି, ସେମାନେ ମଧ୍ୟ କେତୋଟି ନିର୍ଦ୍ଦିଷ୍ଟ ମୂର୍ତ୍ତି ଛଡ଼ା ଅନ୍ୟକିଛି କରିଛନ୍ତି ବୋଲି ମନେହେଲା ନାହିଁ । ସମସ୍ତେ ସେଇ ଜଗନ୍ନାଥ, ହାତୀ, ଘୋଡ଼ା ବା ସିଂହର ମୂର୍ତ୍ତି ଗଠନରେ ବ୍ୟସ୍ତ । କିନ୍ତୁ ଜଣେ ଶିଳ୍ପୀଙ୍କ ଘରେ ଅନେକଗୁଡ଼ିଏ ପେଚାର ମୂର୍ତ୍ତି ଦେଖି ଆଶ୍ଚର୍ଯ୍ୟ ହେଲି । ପେଚା ୟୁରୋପର ଶିଳ୍ପୀମାନଙ୍କର ମୁଖ୍ୟ ବିଷୟବସ୍ତୁ ମଧ୍ୟରେ ଅନ୍ୟତମ । କିନ୍ତୁ କୌଣସି କାରଣରୁ

ଭାରତୀୟ ଶିଳ୍ପୀମାନେ ସେମାନଙ୍କ ଶିଳ୍ପରେ ପେଚାକୁ ସ୍ଥାନ ଦିଅନ୍ତି ନାହିଁ । ପେଚାମୂର୍ତ୍ତି ପ୍ରସ୍ତୁତ କରୁଥିବା ଶିଳ୍ପୀ ଅନୁପସ୍ଥିତ ଥିବାରୁ କାହା ବରାଦରେ ସେ ଏ ମୂର୍ତ୍ତିଗୁଡ଼ିକ ପ୍ରସ୍ତୁତ କରୁଛନ୍ତି, ଜାଣିପାରିଲି ନାହିଁ ।

ରଘୁରାଜପୁରର ଶିଳ୍ପୀମାନେ ଏକ ପ୍ରାଚୀନ ସମ୍ପ୍ରଦାୟ । ସେମାନଙ୍କ ଶିଳ୍ପ ଏବଂ ଜୀବିକା ବହୁ ଅତୀତକାଳରୁ ଜଗନ୍ନାଥ ମନ୍ଦିର ସହିତ ସମ୍ପୃକ୍ତ । ସେମାନଙ୍କ ଜାତି କ'ଣ ପଚାରିବାରେ ଜଣେ କହିଲେ, ସେମାନେ 'ଜଗନ୍ନାଥଙ୍କର ରୂପକାର' । ଆଉ ଜଣେ କହିଲେ, 'ଶ୍ରୀଜଗନ୍ନାଥଙ୍କ ମନ୍ଦିର ହେଲା ଦିନଠାରୁ ଆମେମାନେ ଅଛୁ । କାରଣ ଆମେ ଚିତ୍ରପଟ ପୁରାତନ ଯୁଗରୁ କରି ଆସୁଛୁ, ଯାହାକି ଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିରରେ ସ୍ନାନପୂର୍ଣ୍ଣିମାଠାରୁ ଉଭା ଅମାବାସ୍ୟା ପର୍ଯ୍ୟନ୍ତ ଅଣସର ଘରେ ପନ୍ଦରଦିନ ଯାଏଁ ପୂଜା ହୁଅନ୍ତି ।'

ମୋଟ ଉପରେ ଏହି ଶିଳ୍ପୀମାନଙ୍କ ଦୃଷ୍ଟିଭଙ୍ଗୀଠାରୁ ଆରମ୍ଭ କରି ଶିଳ୍ପକଳାର ଉପକରଣ ପର୍ଯ୍ୟନ୍ତ ସବୁକିଛି ଧର୍ମ ଓ ପରମ୍ପରା ଉପରେ ପ୍ରତିଷ୍ଠିତ । ଅଳ୍ପ କେତେବର୍ଷ ହେଲା ସେମାନଙ୍କ ଶିଳ୍ପକୁ ଅଧିକ ବ୍ୟାବସାୟିକ କରିବା ଉଦ୍ଦେଶ୍ୟରେ ସରକାରଙ୍କ ପକ୍ଷରୁ ଉଦ୍ୟମ ଆରମ୍ଭ ହୋଇଛି । ମୋର ଅଫିସର ବନ୍ଧୁ ଏହି ଶିଳ୍ପୀମାନଙ୍କୁ କେତେକ ନୂତନ ମୂର୍ତ୍ତି ଅଙ୍କନ କରିବା ପାଇଁ ତଥା କେବଳ ପଟ ଉପରେ ଚିତ୍ର ନ ଆଙ୍କି ବାଉଁଶନଳୀ ପ୍ରଭୃତି ଅନ୍ୟାନ୍ୟ ଉପକରଣ ଉପରେ ଚିତ୍ର ଆଙ୍କିବା ପାଇଁ ପରାମର୍ଶ ଦେଇଥିଲେ । ଶିଳ୍ପୀମାନେ ଏଯାବତ୍ ବ୍ୟବହାର କରୁଥିବା ରଙ୍ଗସବୁ ମୁଖ୍ୟତଃ ବୃକ୍ଷଲତାରୁ ସଂଗୃହୀତ (vegetable dyes) । ଏସବୁ ପରିବର୍ତ୍ତେ ଆକ୍ରାଲିକ୍ (acrallyc) ରଙ୍ଗ ବ୍ୟବହାର କଲେ ସେମାନଙ୍କ ଚିତ୍ରସବୁ ଅଧିକ କାଳ ସ୍ଥାୟୀ ହୁଅନ୍ତା । ଏବଂ ଚିତ୍ରକୁ ସଫାକଲେ ମଧ ରଙ୍ଗ ଛାଡ଼ିଯାଆନ୍ତା ନାହିଁ । ଏଭଳି ନୂଆ ରଙ୍ଗ ବ୍ୟବହାର କଲେ ହୁଏତ ନୂଆ ଧରଣର ତୁଳୀ ବ୍ୟବହାର କରିବାକୁ ପଡ଼ିବ ଏବଂ ଏହି ନୂଆରୀତିରେ ଅଭ୍ୟସ୍ତ ହେବାକୁ କିଛି ସମୟ ଲାଗିବ ।

ପରମ୍ପରା ଓ ଆଧୁନିକତାର ସଂଘର୍ଷ ତ ସବୁ ସମ୍ପ୍ରଦାୟରେ ଲାଗିରହିଛି; ରଘୁରାଜପୁରର ଶିଳ୍ପୀମାନେ ସେଥିରୁ ବାଦ୍ ଯିବାର କାରଣ ନାହିଁ । ଶ୍ରୀ କୁଞ୍ଜବିହାରୀ ମହାରଣା ଆପାତତଃ ଜଣେ ଅବହେଳିତ ଚିତ୍ରକର । ଉଭୟ ସମିତି ଓ ସରକାର ଶିଳ୍ପୀମାନଙ୍କ ଧର୍ମ ଓ ପରମ୍ପରାର କ୍ଷତି କରୁଛନ୍ତି ବୋଲି ସେ ଅଭିଯୋଗ କଲେ । ଏହି ଅଭିଯୋଗ ମୂଳରେ କିଛି ବ୍ୟକ୍ତିଗତ କାରଣ ଥିବାଭଳି ମନେହେଲା; କିନ୍ତୁ ତାଙ୍କ ଅଭିଯୋଗର କିଛି ଗୁରୁତ୍ୱ ଅଛି । ସେ ଖଣ୍ଡିଏ କାଗଜରେ ତାଙ୍କର ଅଭିଯୋଗ

ସବୁ ସରକାରଙ୍କ ଉଦ୍ଦେଶ୍ୟରେ ଲେଖି ରଖିଛନ୍ତି । ସେଥିରୁ କେତେକ ଅଂଶ ଏଠାରେ ଉଦ୍ଧାର କରାଯାଇପାରେ–

X X X ମହାଶୟ, ଆମ୍ଭମାନଙ୍କର ଯେଉଁ ଚିତ୍ରପଟି ତିଆରି ହୁଏ, ସେସବୁ ଦେଶୀରଙ୍ଗ । ଆପଣଙ୍କ ଅନୁଗ୍ରହରୁ ପଟଚିତ୍ର ଶିକ୍ଷା ବହୁ ସ୍ଥାନରେ ବହୁ ଲୋକଙ୍କୁ ଉନ୍ନତି ପଥରେ ଆଗେଇ ନେଉଛି । ତଥାପି କେହି ହେଲେ ଚିତ୍ରକାରର ଧର୍ମ, କର୍ମ, ରଙ୍ଗ, ମୂଳଦୁଆ କ'ଣ, ତାହା ଅନୁକରଣ କରୁନାହାନ୍ତି । ଦେଶୀରଙ୍ଗ, ଦେଶୀପଟି, ଦେଶୀକାଠ, ଦେଶୀ ରଙ୍ଗ ଷଢ଼େଇ–ଏସବୁକୁ ଛାଡ଼ି ବିଲାତୀରଙ୍ଗ ବା ବିଦେଶୀ ଜିନିଷ ବ୍ୟବହାର କରି ଆପଣମାନଙ୍କ ସମ୍ମୁଖରେ ଚିତ୍ରକାର ବୋଲି ପ୍ରମାଣ ଦେଇ କଳାବିଦ୍ୟାର ବେଶ ମଢ଼େଇ ଶିଳ୍ପକାର ବୋଲି ନାଁ ନେଇ ଆପଣଙ୍କୁ ମୁଗ୍ଧ କରି ନିଜକୁ ନିଜେ ଧନ୍ୟବାଦ ଦେଇ ସୁଖରେ କାଳଯାପନ କରୁଛନ୍ତି । X X X ଯଦି ଗୋଟିଏ କାରିଗର ପ୍ରକୃତରେ ଦେଶୀରଙ୍ଗ, ହିଙ୍ଗୁଳ, ହରିତାଳ, ଶଙ୍ଖ, କଳା, ଗେରୁ, ଖଡ଼ି– ଏସବୁକୁ ନିଜର ବୁଦ୍ଧିବିଦ୍ୟା ସହ ଶରୀର ପରିଶ୍ରମ କରି ବ୍ୟବହାର କରିପାରନ୍ତେ, ତାହାହେଲେ ଅସାଧକୁ ସାଧ କରିପାରନ୍ତେ । ତେବେ ଏ ଜାତିର ପୁନରୁନ୍ନତି ହୁଅନ୍ତା । ☐

(୧୯୮୩)

# କଳାହାଣ୍ଡି-ଦର୍ଶନ

## ଚାଉଳ ନୁହେଁ, ଭାତ

ଭବାନୀପାଟଣାର ଗୋଟିଏ ପଞ୍ଜାବୀ ହୋଟେଲରେ ଆମେ ଡ଼ିନର୍ ଖାଉଥିଲୁ । ମୁଁ, ଡ଼କ୍‌ଟର କୃଷ୍ଣପ୍ରସାଦ ମିଶ୍ର, ଅଧ୍ୟାପକ ଶୁଭେନ୍ଦୁ ମୁଣ୍ଡ ଓ କଳାହାଣ୍ଡିର କେତେ ଜଣ ତରୁଣ ବନ୍ଧୁ । ହୋଟେଲର ବୟଟି ପଚାରିଲା, 'ଆଉ ଚାଉଳ ନେବେ ?' କଳାହାଣ୍ଡିର ଜଣେ ତରୁଣ ବନ୍ଧୁ ରାଗି ଉଠିଲେ, 'କିରେ ଭାତ ନ କହି ଚାଉଳ କହୁଛୁ କାହିଁକି ? ପଞ୍ଜାବୀ ହୋଟେଲରେ କାମ କଲେ ଓଡ଼ିଆ ଭୁଲି ଯା'ନ୍ତି କିରେ ?'

ଆପାତତଃ ଘଟଣାଟି ନଗଣ୍ୟ ଓ ଏଥିରେ ଗୁରୁତ୍ୱ ଆରୋପ କରିବାର କିଛି ନାହିଁ । କିନ୍ତୁ ବିଗତ କେତେ ସପ୍ତାହ ହେଲା (ଘଟଣାଟି ଘଟିଥିଲା ନଭେମ୍ବର ମାସରେ) ଓଡ଼ିଶାରେ, ବିଶେଷତଃ ପଶ୍ଚିମ ଓଡ଼ିଶାରେ, ଛାତ୍ରମାନଙ୍କର ଏକ ବ୍ୟବସାୟୀ ଗୋଷ୍ଠୀ ସହିତ ସଂଘର୍ଷକୁ କେନ୍ଦ୍ରକରି ଯେଉଁ ଆନ୍ଦୋଳନ ଚାଲିଛି, ସେ ପରିପ୍ରେକ୍ଷୀରେ ଏ ଘଟଣାଟି ଉଲ୍ଲେଖ କରିବାର ଯଥେଷ୍ଟ ତାତ୍ପର୍ଯ୍ୟ ଅଛି । ବିଗତ ନଭେମ୍ବର ମାସରେ କଳାହାଣ୍ଡି ଜିଲ୍ଲାରେ ଅଳ୍ପ କେତୋଟି ଦିନର ରହଣି ଭିତରେ ମୁଁ ସ୍ପଷ୍ଟ ଲକ୍ଷ୍ୟ କଲି, ସାଧାରଣ ଲୋକ ବିଶେଷତଃ ତରୁଣ ଗୋଷ୍ଠୀ ମଧ୍ୟରେ ଏକ ନୂତନ ଆତ୍ମାଭିମାନ ଆସିଛି । ସେମାନେ ଅଧିକତର ସଚେତନ ହୋଇଛନ୍ତି ଯେ ସେମାନେ ଓଡ଼ିଆ । ସେଦିନ ପଞ୍ଜାବୀ ହୋଟେଲରେ ଆଉ ଜଣେ ତରୁଣ ବନ୍ଧୁ ମନ୍ତବ୍ୟ ଦେଇଥିଲେ, ବର୍ତ୍ତମାନର ଛାତ୍ର ଆନ୍ଦୋଳନ ଫଳରେ ଅନ୍ତତଃ ଗୋଟିଏ ଲାଭ ହୋଇଛି । ଓଡ଼ିଆମାନେ ସେମାନଙ୍କ ଓଡ଼ିଆତ୍ୱ ସମ୍ପର୍କରେ ସଚେତନ ହୋଇଛନ୍ତି ।

ବର୍ତ୍ତମାନ ଓଡ଼ିଶା ସାରା ଚାଲିଥିବା ଛାତ୍ର ଆନ୍ଦୋଳନର କାରଣ, ସ୍ୱରୂପ ଓ ଯଥାର୍ଥତା ସମ୍ପର୍କରେ ଏଠାରେ ମୁଁ ବିଶ୍ଳେଷଣ କରୁନାହିଁ । ଅନ୍ୟମାନେ ବିଶେଷତଃ ରାଜନୀତିଜ୍ଞମାନେ, ସରକାରୀ ଓ ବିରୋଧୀ ଦଳର ନେତାମାନେ ଏ ସମ୍ପର୍କରେ ବହୁ ବିଶ୍ଳେଷଣ କରୁଛନ୍ତି ଓ ଘଟଣାର ନିରପେକ୍ଷ ବିଚାର ଅପେକ୍ଷା ରାଜନୀତିକ

ଫାଇଦା ଉପରେ ଅଧିକ ଜୋର ଦେଉଛନ୍ତି । କିନ୍ତୁ ଏଇ ଆନ୍ଦୋଳନ ଫଳରେ ଗୋଟିଏ କଥା ଆମ ଆଖିକୁ ଜଳ ଜଳ ଦିଶୁଛି । ତାହା ହେଉଛି, ପଶ୍ଚିମ ଓଡ଼ିଶାର ଅର୍ଥନୀତି ବର୍ତ୍ତମାନ ମୁଖ୍ୟତଃ ଅଣଓଡ଼ିଆମାନଙ୍କ ଦ୍ୱାରା କବଳିତ ଓ ସ୍ଥାନୀୟ ଓଡ଼ିଆ ଜନସାଧାରଣ ଏ ସମ୍ପର୍କରେ ହଠାତ୍ ସଚେତନ ଓ ଅସନ୍ତୁଷ୍ଟ ହୋଇ ଉଠିଛନ୍ତି । ବହୁ ଶିକ୍ଷିତ ଓ ଅଣରାଜନୀତିକ ବ୍ୟକ୍ତି ବର୍ତ୍ତମାନର ଛାତ୍ର ଆନ୍ଦୋଳକୁ ସମର୍ଥନ କରିବା ମୂଳରେ ଅଛି ପ୍ରଚଳିତ ଅର୍ଥନୀତିକ ବ୍ୟବସ୍ଥା ପ୍ରତି ସେମାନଙ୍କ ଅସନ୍ତୋଷ ଓ ବିରକ୍ତି ।

ଭାରତ ଅବଶ୍ୟ ଏକ ଓ ଅଭିନ୍ନ ରାଷ୍ଟ୍ର । ତେଣୁ ଯେ କୌଣସି ଅଞ୍ଚଳର ବ୍ୟକ୍ତି ଦେଶର ଯେ କୌଣସି ଅଞ୍ଚଳରେ ବ୍ୟବସାୟ ବାଣିଜ୍ୟ କରିବାରେ ବା ସ୍ଥାୟୀ ଭାବରେ ବାସକରିବାରେ କୌଣସି କଟକଣା ନାହିଁ, କିନ୍ତୁ ଭାରତ ମଧ୍ୟ ଏଭଳି ଏକ ରାଷ୍ଟ୍ର ଯେ ଏଠାରେ କେତେକ ଅଞ୍ଚଳ ଅନ୍ୟାନ୍ୟ ଅଞ୍ଚଳ ଅପେକ୍ଷା ଉନ୍ନତ; ପୁଣି କେତେକ ଗୋଷ୍ଠୀ ଅନ୍ୟ କେତେକ ଗୋଷ୍ଠୀ ଅପେକ୍ଷା ଅର୍ଥନୀତି, ରାଜନୀତି ବା ଅନ୍ୟ କେଉଁ ଦିଗରୁ ଅଧିକ ଶକ୍ତିଶାଳୀ । ତେବେ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳ ବା ନିର୍ଦ୍ଦିଷ୍ଟ ଗୋଷ୍ଠୀ ଏକ ଅପେକ୍ଷାକୃତ ଅନୁନ୍ନତ ଓ ଦୁର୍ବଳ ଅଞ୍ଚଳ ବା ଗୋଷ୍ଠୀକୁ ଶୋଷଣ କରିବାକୁ ବସିଲେ ତାହା ସହ୍ୟ କରାଯିବ କି ? ବର୍ତ୍ତମାନର ପ୍ରଚଳିତ ଆଇନ ଏ ଭଳି ଶୋଷଣର ପ୍ରତିରୋଧ କରିବାକୁ ଯଥେଷ୍ଟ ନୁହେଁ । ଆଇନର ଏହି ଫାଙ୍କର ସୁବିଧା ନେଇ ବହୁ ଚତୁର ବ୍ୟବସାୟୀ ବ୍ୟକ୍ତି ଓ ଗୋଷ୍ଠୀ ଅନୁନ୍ନତ ଅଞ୍ଚଳର ଲୋକମାନଙ୍କୁ ବେଶ୍ ମଜାରେ ଶୋଷଣ କରି ଆସିଛନ୍ତି । ଏଇ ଶୋଷିତ ସାଧାରଣ ଲୋକେ ସଚେତନ ହେଲାବେଳକୁ ଦେଖାଯାଉଛି, ସେମାନଙ୍କ ଜମି ଚାଲିଯାଇଛି । ସଂଘଟିତ ବ୍ୟବସାୟୀ ଗୋଷ୍ଠୀଙ୍କ ସହିତ ପ୍ରତିଯୋଗିତା କରିବା ପାଇଁ ସେମାନଙ୍କ ହାତରେ ମୂଳଧନ ନାହିଁ । ରାଜନୀତିକ ନେତାମାନଙ୍କୁ ମଧ୍ୟ ଚତୁର ବ୍ୟବସାୟୀମାନେ ଅର୍ଥ ଦେଇ ହାତରେ ରଖିଛନ୍ତି ।

କଳାହାଣ୍ଡିର ଜଣେ ଆଡ଼ଭୋକେଟ୍ ଛାତ୍ର ଆନ୍ଦୋଳନ ସମ୍ପର୍କରେ ଆଲୋଚନା ପ୍ରସଙ୍ଗରେ କହିଲେ, ଓଡ଼ିଶା ବାହାରର କୌଣସି ବ୍ୟବସାୟୀ ଗୋଷ୍ଠୀ ବହୁ ବର୍ଷ ଧରି ପଶ୍ଚିମ ଓଡ଼ିଶାର ଅର୍ଥନୀତିକୁ କବଳିତ କରି ରଖିଥିଲେ । ଏବେ କିନ୍ତୁ ଓଡ଼ିଶାର ରାଜନୀତି ଓ ସଂସ୍କୃତି ଉପରେ ସେମାନେ ଏକ ବିପଦ ରୂପେ ଦେଖା ଦେଲେଣି । ଗତ ନିର୍ବାଚନରେ ଏଇ ବ୍ୟବସାୟୀ ଗୋଷ୍ଠୀରୁ କେତେ ଜଣ ରାଜ୍ୟ ବିଧାନସଭାକୁ

ଯାଉଛନ୍ତି । କେସିଙ୍ଗା, ଖରିଆର ପ୍ରଭୃତି ଅଞ୍ଚଳରେ ଏଇ ବ୍ୟବସାୟୀମାନେ ବହୁ ଅର୍ଥ ବ୍ୟୟରେ ହିନ୍ଦୀ କବି ସମ୍ମିଳନୀ ଓ ହିନ୍ଦୀ ନାଟକ ଅଭିନୟର ଆୟୋଜନ କରୁଛନ୍ତି, ଏପରିକି ଖରିଆରରେ ପ୍ରଚାର ପତ୍ରମାନ ମରାଯାଇଛି-ଓଡ଼ିଆ ହଟାଓ, ହିନ୍ଦୀ ବଚାଓ । ସେମାନଙ୍କ ହାତରେ ତ ପଇସା ଅଛି, ତେଣୁ ସେମାନେ ପଇସା ଦେଇ ଓଡ଼ିଆ ଲୋକଙ୍କୁ ମଧ୍ୟ କିଣିନେଇ ଓଡ଼ିଆ ବିରୋଧୀ କାର୍ଯ୍ୟରେ ଲଗାଉଛନ୍ତି ।

ଜଣେ ସରକାରୀ ଅଫିସରଙ୍କୁ ଆନ୍ଦୋଳନର ପରିଣତି ସମ୍ପର୍କରେ ପ୍ରଶ୍ନ କରିବାରୁ ଆନ୍ଦୋଳନ ଆପେ ଆପେ ମଉଳିଯିବ ବୋଲି ସେ ମତ ଦେଲେ । ଏହା ଫଳରେ ପଶ୍ଚିମ ଓଡ଼ିଶାର ଅର୍ଥନୀତି କ୍ଷେତ୍ରରେ ହଠାତ୍ କିଛି ପରିବର୍ତ୍ତନ ହୋଇଯିବ ବୋଲି ହୁଏତ ଆଶା କରାଯାଇ ନପାରେ । କିନ୍ତୁ ପଶ୍ଚିମ ଓଡ଼ିଶାର ଅର୍ଥନୀତି ସାଙ୍ଗକୁ ରାଜନୀତି ଓ ସଂସ୍କୃତି କୌଣସି ଅଣଓଡ଼ିଆ ବ୍ୟବସାୟୀ ଗୋଷ୍ଠୀ ଦ୍ୱାରା ଆକ୍ରାନ୍ତ ହେଲେ, ଓଡ଼ିଆ ଜନସାଧାରଣ ନୀରବ ରହିବେ କି ?

## ରାଜକୁମାରଙ୍କ ସହିତ କଫିପାନ

'ଆମ୍ଭେମାନେ ନିଜକୁ କେବେ ରାଜା ବୋଲି ଭାବୁନାହୁଁ, ଆମ୍ଭେମାନେ ଅନ୍ୟ ଯେ କୌଣସି କ୍ଷତ୍ରିୟ ପରିବାର ଭଳି ଗୋଟିଏ କ୍ଷତ୍ରିୟ ପରିବାର ମାତ୍ର । ଏକ ସମୟରେ ଅବଶ୍ୟ ଆମେ ରାଜ୍ୟ ଶାସନ କରୁଥିଲୁ । କିନ୍ତୁ ବର୍ତ୍ତମାନ ଯେ କୌଣସି ଦରିଦ୍ର କ୍ଷତ୍ରିୟ ପରିବାର ସହିତ ବୈବାହିକ ସମ୍ପର୍କ ସ୍ଥାପନାରେ ଆମର କୌଣସି ଆପତ୍ତି ନାହିଁ ।'

କଳାହାଣ୍ଡି ମହାରାଜାଙ୍କର ଦ୍ୱିତୀୟପୁତ୍ର ଶ୍ରୀ ବିକ୍ରମ ଦେଓ ତାଙ୍କ ଅଫିସ ରୁମ୍‌ରେ ମୋର ଗୋଟିଏ ପ୍ରଶ୍ନର ଉତ୍ତର ଦେଉଥିଲେ । ସେମାନେ ସେମାନଙ୍କ ବୈବାହିକ ସମ୍ପର୍କ କେବଳ ରାଜ ପରିବାର ମଧ୍ୟରେ ଆବଦ୍ଧ ରଖୁଛନ୍ତି କି ବୋଲି ମୁଁ ପଚାରିଥିଲି ।

ରାଜବାଟୀ ଭବାନୀପାଟଣାର ଏକ ଅବଶ୍ୟ ଦର୍ଶନୀୟ ସ୍ଥାନ । ଏହାର ପ୍ରତ୍ନତତ୍ତ୍ୱ ଇତିହାସ ଛଡ଼ାଇ ନେଇଥିଲେ ସୁଦ୍ଧା ଅତୀତର ବହୁ ଗୌରବ, ଆଭିଜାତ୍ୟ ଓ ଆସ୍ପର୍ଦ୍ଧାର ଏହା ମୂକ ପ୍ରତୀକ । ରାଜବାଟୀ ସମ୍ମୁଖରେ ପ୍ରଶସ୍ତ ସଭାମଣ୍ଡପ । ଏବେ ବି ପ୍ରତିବର୍ଷ ମହାରାଜାଙ୍କ ପୃଷ୍ଠପୋଷକତାରେ ସେଠାରେ ଧର୍ମ ଓ ସାହିତ୍ୟ ସଭାମାନ ଅନୁଷ୍ଠିତ ହୁଏ । ରାଜଉଦ୍ୟାନ ପ୍ରାୟ ପରିତ୍ୟକ୍ତ । କିନ୍ତୁ ଉଦ୍ୟାନରେ ବିଚରଣ

କରୁଥିବା କେତୋଟି ମୃଗ ତଥାପି ଦର୍ଶକମାନଙ୍କୁ ସ୍ମରଣ କରାଇ ଦିଅନ୍ତି ଯେ ଉଦ୍ୟାନରେ ଏକଦା ମୃଗ ବିହାରଟିଏ ମଧ୍ୟ ଥିଲା ।

ବିଶାଳ ରାଜବାଟୀର ଗଠନରୀତି ପାରମ୍ପାରିକ ହେବା ସ୍ୱାଭାବିକ । ମହାରାଜାଙ୍କ ପାଠାଗାର, ବୈଠକ ଘର, ମନ୍ଦିର, ଅଫିସ-ସବୁଠାରେ ଆଭିଜାତ୍ୟ ଓ ପ୍ରାଚୀନତାର ମୁଦ୍ରା ସ୍ପଷ୍ଟ । କାନ୍ଥରେ ହିଂସ୍ରଜନ୍ତୁମାନଙ୍କୁ ହତ୍ୟା କରାଯିବାର ରଙ୍ଗୀନ ପେଣ୍ଟିଂ ଏବଂ ମହାରାଜା ଓ ତାଙ୍କ ପୂର୍ବପୁରୁଷମାନଙ୍କ ଆଲୋକଚିତ୍ର ।

ଅଫିସ ଗୃହରେ ଶ୍ରୀ ବିକ୍ରମ ଦେଓ ଖଣ୍ଡିଏ ଧଳା ଫୁଲ୍ ହାଓ୍ୱାଇ ପିନ୍ଧି ଓଠରେ ସିଗାରେଟଟିଏ ଚାପି ଅମାୟିକ ଭାବରେ ଆମ ସଙ୍ଗେ ଇଂରାଜୀରେ ଆଳାପ କରୁଥିଲେ । ସେ ଦିଲ୍ଲୀରେ ପଢ଼ିଛନ୍ତି, ଜଣେ ଶିଳ୍ପପତି ହେବା ତାଙ୍କର ଲକ୍ଷ୍ୟ । ସେଥିପାଇଁ କେତେ ଲକ୍ଷ ଟଙ୍କାରେ ସେ ଭବାନୀପାଟଣାରେ ଶିଳ୍ପାଞ୍ଚଳଟିଏ ଗଢ଼ିବା ଆରମ୍ଭ କରିଛନ୍ତି । ରାଜନୀତିରେ ମଧ୍ୟ ସେ କେତେକାଂଶରେ ଆଗ୍ରହୀ । ସେ ବିବାହିତ, ତାଙ୍କର ଗୋଟିଏ ଝିଅ ଉଟିରେ ପାଠ ପଢ଼େ । ଉଟିରେ ତାଙ୍କର ଘରଟିଏ ଅଛି ।

ଶ୍ରୀ ବିକ୍ରମ ଦେଓଙ୍କ ଅମାୟିକ ତରୁଣ ବ୍ୟକ୍ତିତ୍ୱରେ ତଥାପି ରାଜକୀୟ ହାବଭାବ କିଛିଟା ଲାଗି ରହିଥିଲା । ରାଜବାଟୀର ପୃଷ୍ଠଭୂମି ତାଙ୍କ ବ୍ୟକ୍ତିତ୍ୱକୁ ନିଶ୍ଚିତ ଭାବରେ ଆଭିଜାତ୍ୟ ଓ ଗାମ୍ଭୀର୍ଯ୍ୟ ଯୋଗାଉଥିଲା । ସେ ଆମକୁ ସିଗାରେଟ୍ ଯାଚିଲେ । ଆମ ପାଇଁ କଫି ମଗାଇଲେ । ଅଫିସ ଘରେ ଉପସ୍ଥିତ ତାଙ୍କର ଗୁମାସ୍ତା ଦୁଇଜଣ ତାଙ୍କର ବେଶ୍ ବିଶ୍ୱସ୍ତ ଓ ଅନ୍ତରଙ୍ଗ ମନେ ହେଉଥିଲେ । ଆମ ସହିତ ଆଲୋଚନା କାଳରେ ମଧ୍ୟେ ମଧ୍ୟେ ସେ ଗୁମାସ୍ତାମାନଙ୍କ ସଙ୍ଗେ ପରାମର୍ଶ କରୁଥିଲେ । ହଠାତ୍ ଜ୍ୟୋତିଷ ପ୍ରସଙ୍ଗ ଉଠିଲା । ତାଙ୍କର ଜଣେ ଗୁମାସ୍ତା ତତ୍କ୍ଷଣାତ୍ ବିକ୍ରମ ଦେଓଙ୍କୁ ତାଙ୍କ ରାଶିଟି ସ୍ମରଣ କରାଇ ଦେଲେ ।

ମହାରାଜା ପ୍ରତାପ କେଶରୀ ଦେଓ ରାଜବାଟୀରେ ଅନୁପସ୍ଥିତ ଥିଲେ । ତେଣୁ ରାଜବାଟୀ ଉପରେ ପତକା ଉଡୁ ନଥିଲା । ତାଙ୍କ ପୁତ୍ରଙ୍କଠାରୁ ଆମେ ଶୁଣିବାକୁ ପାଇଲୁ, ଗତ ନିର୍ବାଚନରେ ହାରିଯିବା ପରେ ସେ ବହୁ ସମୟ ଧର୍ମଶାସ୍ତ୍ର ଅଧ୍ୟୟନରେ ବିତାଉଛନ୍ତି । ରାଜନୀତି ବା କ୍ଷମତା ପ୍ରତି ତାଙ୍କର ଖୁବ ମୋହ ନାହିଁ । ସେ ଜଣେ ପଠନପ୍ରିୟ, ମେଳାପୀ, ଗୁଣୀ ବ୍ୟକ୍ତି ।

ରାଜବାଟୀର ଅଭ୍ୟନ୍ତରର ଆଭିଜାତ୍ୟରେ ମୁଗ୍ଧ ହୋଇ ଜଣେ ବନ୍ଧୁ ମନ୍ତବ୍ୟ ଦେଲେ, 'ନିର୍ବାଚନରେ ମହାରାଜାଙ୍କୁ ଯିଏ ହରାଇ ଦେଲେ, ସେ ମହାରାଜାଙ୍କ ଖାନଦାନି ପାଇବେ କେଉଁଠୁ ?' ସେ ଠିକ୍ କହୁଥିଲେ । ମହାରାଜାଙ୍କ ପାଠାଗାରରେ ମହାରାଜା ଶିକାର କରିଥିବା ମହାବଳ ବାଘଟିଏ ସୁରକ୍ଷିତ (stuffed) ହୋଇଥିଲା । ଏପରିକି ମହାରାଣୀ ଶିକାର କରିଥିବା ଚିତାବାଘଟିକୁ ମଧ୍ୟ ଆମେ ଦେଖିଲୁ । ମହାରାଜାଙ୍କ ବୀରତ୍ୱ ଓ ଆଭିଜାତ୍ୟର ଏମାନେ ଥିଲେ ନିଶ୍ଚିତ ପ୍ରତୀକ । ଆମକୁ ରାଜବାଟୀ ବୁଲାଇ ଦେଖାଉଥିବା ଗୁମାସ୍ତା ମହାଶୟ କିନ୍ତୁ ଦୁଃଖ କରୁଥିଲେ, 'ଏଇ ରାଜବାଟୀର ରକ୍ଷଣାବେକ୍ଷଣ ପାଇଁ ଅର୍ଥର ଏକାନ୍ତ ଅଭାବ । ଦେଖନ୍ତୁ, ମହାରାଜା ଶିକାର କରିଥିବା ଏଇ ବାଘଟିର ଅବସ୍ଥା । ତା ଚମଡ଼ାରେ ଯେଉଁ ତେଲ ବୋଳା ହେବା କଥା, ସେ ତେଲ କିଣିବାକୁ ବି ପଇସା ନାହିଁ । ସେଥିପାଇଁ ବାଘ ଦେହରୁ ରୁମ୍‌ସବୁ ଝଡ଼ିଯାଉଛି ।' ❑

(୧୯୮୩)

# କେନ୍ଦୁବିଲ୍ୱ

ଭୁବନେଶ୍ୱର ଓ କଟକ ମଧ୍ୟରେ ବାଲିଅନ୍ତା ଥାନା ଅଞ୍ଚଳରେ କ୍ଷୁଦ୍ର ଗ୍ରାମଟିଏ- କେନ୍ଦୁଲି । ଏହାହିଁ ମହାକବି ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁବିଲ୍ୱ ବୋଲି ବହୁ ଗବେଷକଙ୍କ ଦ୍ୱାରା ଚିହ୍ନିତ ହେବା ପରେ ବିଗତ କେତେବର୍ଷ ହେଲା ଏଇ ଗ୍ରାମକୁ ବୁଦ୍ଧିଜୀବୀ, ସାହିତ୍ୟିକ ଓ ସରକାରୀ କର୍ମକର୍ତ୍ତାମାନଙ୍କ ସମାଗମ ହୋଇ ଆସୁଛି । ଏପରିକି ଏହି ଗ୍ରାମକୁ ଏକ ପର୍ଯ୍ୟଟକ କେନ୍ଦ୍ରରେ ପରିଣତ କରିବା ପାଇଁ ଓଡ଼ିଶା ସରକାର ଯୋଜନା କରିଛନ୍ତି ବୋଲି ଶୁଣିବାକୁ ମିଳୁଛି ।

ଅଳ୍ପଦିନ ତଳେ ଭୁବନେଶ୍ୱରର କେତେଜଣ ପ୍ରତିଷ୍ଠିତ ଲେଖକଙ୍କ ଗହଣରେ ଏଇ ଗ୍ରାମଟିରେ କିଛି ସମୟ କଟାଇବାର ସୁଯୋଗ ମିଳିଥିଲା । ସହଜେ ବର୍ଷାକାଳ- ତେଣୁ ଆଦିଗନ୍ତ ସ୍ଥଳଭାଗ ଅଖଣ୍ଡ ସବୁଜିମାରେ ଆବୃତ । କଟକ ରାସ୍ତାରୁ କେନ୍ଦୁଲି ଯାଏଁ ଲମ୍ବିଥିବା ଲୋହିତ ସଡ଼କଟିର ଦକ୍ଷିଣ ଦିଗରେ କୁଆଖାଇ ନଦୀ; ସଡ଼କର ଦୁଇପାର୍ଶ୍ୱରେ ନିବିଡ଼ ପତ୍ରମଣ୍ଡିତ ଅସଂଖ୍ୟ ମହୀରୁହ । ପ୍ରକୃତିର ଅପୂର୍ବ ସୌନ୍ଦର୍ଯ୍ୟର ଆଧାର ଏଇ ଅଞ୍ଚଳଟି ସ୍ୱାଭାବିକ ଭାବରେ ବିମୋହିତ କରିଥିଲା ସମସ୍ତଙ୍କୁ ।

କେନ୍ଦୁଲି ଯିବା ବାଟରେ ଅନ୍ୟ ଦୁଇଟି ଆକର୍ଷଣ ହେଲେ ଦୁର୍ଗାମାଧବ ମନ୍ଦିର ଏବଂ ବିଳାସୁଣୀ ଠାକୁରାଣୀ । ଦୁର୍ଗାମାଧବ ମନ୍ଦିରଟି ସ୍ଥାପିତ ୧୯୧୯ରେ; ଚମତ୍କାର କୃଷ୍ଣବିଗ୍ରହଟିକୁ ଜଣେ ପୁଲିସ ଅଫିସର ସ୍ୱପ୍ନାଦିଷ୍ଟ ହୋଇ କୁଆଖାଇ ନଦୀ ଗର୍ଭରୁ ସଂଗ୍ରହ କରିଥିଲେ ବୋଲି କିମ୍ବଦନ୍ତୀ ପ୍ରଚଳିତ । ବିଳାସୁଣୀ ଠାକୁରାଣୀ ଗୋଟିଏ ଅତି ପ୍ରାଚୀନ ବରଗଛର ଗଣ୍ଡିରେ ସିନ୍ଦୁର ଏବଂ କଳାରଙ୍ଗରେ ଅଙ୍କିତ । ବରଗଛ ମୂଳରେ ବର୍ଗାକାର ମାଟି ଚଟାଣ । ଚଟାଣ ଉପରେ ପୋଡ଼ା ମାଟିରେ ନିର୍ମିତ କେତୋଟି କ୍ଷୁଦ୍ର ଘୋଡ଼ାମୂର୍ତ୍ତି, ଗୋଟିଏ ପ୍ରସ୍ତର ସିଂହ ।

ପ୍ରାୟ ବାରମାଇଲ କର୍ଦ୍ଦମାକ୍ତ ନାଲି ସଡ଼କ ଅତିକ୍ରମ କରି ମଧ୍ୟାହ୍ନରେ ଆମେ ପହଞ୍ଚିଲୁ କେନ୍ଦୁଲିରେ-ସରକାରଙ୍କ ଦ୍ୱାରା ସଦ୍ୟନିର୍ମିତ ଗୋଟିଏ ଦୁଇ ବଖରିଆ ବାଂଲୋରେ । ବାଂଲୋର ଗୋଟିଏ ବଖରାରେ ମିଉଜିୟମ-କେନ୍ଦୁଲି ଅଞ୍ଚଳରୁ ପ୍ରାପ୍ତ କେତୋଟି ପ୍ରାଚୀନ ପଥର ମୂର୍ତ୍ତି ସେଥିରେ ସଂଗୃହୀତ-ବିଷ୍ଣୁ, ତାରା, ଭୈରବୀ, ଲକ୍ଷ୍ମୀନାରାୟଣ, ମାଧବ, ଆସ୍ତିକ-ଜପତବନ୍ଧୁ, ସିଂହ ପ୍ରଭୃତି । ଶିଳାଲେଖଟିଏ ମଧ୍ୟ । ସେଥିରେ ଅକ୍ଷରସବୁ ଅସ୍ପଷ୍ଟ । ଶୁଣିଲୁ, ସ୍ୱର୍ଗତ କେଦାରନାଥ ମହାପାତ୍ରଙ୍କ

ଉଦ୍ୟମ ଓ ଯତ୍ନରେ ମିଉଜିୟମ୍‌ଟି ନିର୍ମିତ । ଆପାତତଃ ମୂର୍ତ୍ତିଗୁଡ଼ିକ ଖୁବ୍ ପ୍ରାଚୀନ । କିନ୍ତୁ ପବନ ଓ ଧୂଳିରୁ ରକ୍ଷା କରିବାକୁ ସେଗୁଡ଼ିକୁ କାଚ କେସ୍‌ରେ ରଖାଯାଇନାହିଁ ।

ବାଂଲୋ ନିକଟରେ ଦୁର୍ଗା ମନ୍ଦିର । ମନ୍ଦିରର ମୁଖଶାଳାଟି ପ୍ରସ୍ତର ନିର୍ମିତ ଏବଂ ବେଶ୍ ପ୍ରାଚୀନ । କିନ୍ତୁ ମୁଖ୍ୟ ମନ୍ଦିରଟି ଇଟା ଓ ସିମେଣ୍ଟରେ ଅଳ୍ପ କିଛିବର୍ଷ ତଳେ ସରକାରୀ ଅର୍ଥରେ ଗଠିତ । ଗୋଟିଏ ଅଂଶ ପଥର ଓ ଅନ୍ୟ ଅଂଶଟି ଇଟାରେ ତିଆରି ମନ୍ଦିରଟି ସ୍ଥପତି ବା ଉଦ୍ୟୋକ୍ତାମାନଙ୍କ ଉପଯୁକ୍ତ ରୁଚିଜ୍ଞାନର ପରିଚୟ ଦିଏ ନାହିଁ । ମନ୍ଦିରର ଚତୁର୍ଦ୍ଦିଗରେ ପଥର ପାଚେରିଟିଏ ନାହିଁ । ମନ୍ଦିର ମଧ୍ୟରେ କିନ୍ତୁ ଉଭା ହୋଇଛନ୍ତି କଳାମୁଗୁନି ପଥରର ଦୁଇଟି ଚମତ୍କାର ଦୁର୍ଗାମୂର୍ତ୍ତି । ଗୋଟିଏ ମୂର୍ତ୍ତିର ମସ୍ତକ ଉପରେ ସପ୍ତଫେଣୀ ନାଗ । ମନ୍ଦିର ଭିତରଟି ଅନ୍ଧକାରମୟ; ଦୁର୍ଗାଙ୍କ ପୂଜା ଉପଚାରର କୌଣସି ବ୍ୟବସ୍ଥା ନାହିଁ ।

ଦୁର୍ଗା ମନ୍ଦିରରୁ ପ୍ରାୟ ଗୋଟିଏ କିଲୋମିଟର ଦୂରରେ ପ୍ରାୟ ସତୁରି ହଜାର ଟଙ୍କା ବ୍ୟୟରେ ନିର୍ମିତ ହେଉଛି ଜୟଦେବ ମଣ୍ଡପ । କରଞ୍ଜ, ନିମ, ଜାମୁକୋଳି ବୃକ୍ଷସବୁ ମଣ୍ଡପ ନିକଟରେ ସୃଷ୍ଟି କରିଛନ୍ତି ଚମତ୍କାର ପରିବେଶ ।

ମୋଟ ଉପରେ କେନ୍ଦୁଲି ଏକ ପର୍ଯ୍ୟଟନ କେନ୍ଦ୍ରରେ ପରିଣତ ହେଲେ ଦେଶ ବିଦେଶରୁ ଯାତ୍ରୀମାନେ ବହୁସଂଖ୍ୟାରେ ଏହି ମିଉଜିୟମ, ମନ୍ଦିର ଏବଂ ମଣ୍ଡପ ପରିଦର୍ଶନ କରିବାକୁ ଆସିବେ ବୋଲି ଆଶା କରାଯାଏ । କିନ୍ତୁ ଏଗୁଡ଼ିକୁ ଦେଖିବା ପରେ ସେମାନେ ଘୋର ନୈରାଶ୍ୟରେ ଫେରିବା ଛଡ଼ା ସେମାନଙ୍କର ଅନ୍ୟ ଉପାୟ ନାହିଁ । ନାଲି ହଳଦିଆ ରଙ୍ଗ ବୋଳି ଆମର କଣ୍ଟ୍ରାକ୍ଟରମାନେ ଯେଉଁ ବାଂଲୋ ଓ ମଣ୍ଡପ ଦୁଇଟି ଠିଆ କରାଇଛନ୍ତି, ସେଗୁଡ଼ିକ ଅତି ଚମତ୍କାର ଲ୍ୟାଣ୍ଡସ୍କେପ ଉପରେ ଦୁଇକୁଢ଼ ସହରୀ ଆବର୍ଜନା ପରି ମନେ ହେଉଛି । ଏକ ଚମତ୍କାର ଲ୍ୟାଣ୍ଡସ୍କେପର ସୌନ୍ଦର୍ଯ୍ୟକୁ କିପରି ଧ୍ୱଂସ କରାଯାଇ ପାରେ ଏବଂ ଆମର କଣ୍ଟ୍ରାକ୍ଟରମାନେ କିଭଳି କୀର୍ତ୍ତିମାନ ସ୍ଥାପନ କରିପାରନ୍ତି-ତାହାର ଉଜ୍ଜ୍ୱଳ ପ୍ରମାଣ କେନ୍ଦୁଲିର ମିଉଜିୟମ୍ ଗୃହ ଏବଂ ଜୟଦେବ ମଣ୍ଡପ ।

କେନ୍ଦୁଲିକୁ ଏକ ପର୍ଯ୍ୟଟନ କେନ୍ଦ୍ରରେ ପରିଣତ କରିବାର ଯୋଜନା କରିଥିବାରୁ ସଂସ୍କୃତିପ୍ରେମୀ ବ୍ୟକ୍ତିମାନେ ଓଡ଼ିଶା ସରକାରଙ୍କ ନିକଟରେ କୃତଜ୍ଞ । କିନ୍ତୁ କେନ୍ଦୁଲିର ପ୍ରାଚୀନତା ଏବଂ ପରିବେଶକୁ ସୁହାଇଲା ଭଳି ଯୋଜନାଟିଏ କରି ମନ୍ଦିର, ମିଉଜିୟମ ଏବଂ ମଣ୍ଡପମାନ ନିର୍ମାଣ କରିବା ଏକାନ୍ତ ଉଚିତ ଥିଲା ।

ପୁଣି କେନ୍ଦୁବିନ୍ଦ୍ ନାମର ଯଥାର୍ଥତା ପ୍ରକାଶ କରିବା ପାଇଁ ଉଚିତ ଥିଲା ଗ୍ରାମର ଚତୁର୍ଦ୍ଦିଗରେ କେନ୍ଦୁ ଓ ବିନ୍ଦ୍ର ଜଙ୍ଗଲମାନ ସୃଷ୍ଟି କରିବା; କିନ୍ତୁ ସ୍ଥାନଟିର ସୌନ୍ଦର୍ଯ୍ୟ ବଢ଼ାଇବା ପାଇଁ ସରକାରୀ କର୍ମକର୍ତ୍ତାମାନେ ମିଉଜିୟମ ସମ୍ମୁଖରେ ଇତସ୍ତତଃ ସିମେଣ୍ଟ କୁଣ୍ଡରେ ରୋପଣ କରିଛନ୍ତି ଅର୍ଦ୍ଧମୃତ କେତୋଟି ଫୁଲ ଚାରା । କେବଳ ସ୍ଥାପତ୍ୟ ନୁହେଁ; ଉଦ୍ୟାନ ନିର୍ମାଣରେ ମଧ୍ୟ ଆଧୁନିକ ଓଡ଼ିଆମାନେ ଯେ ବେଶ ପାରଙ୍ଗମ, ହୁଏତ ଦେଶ ବିଦେଶର ଯାତ୍ରୀମାନେ ଏକ ବିସ୍ତୃତ ସବୁଜ ଲ୍ୟାଣ୍ଡସ୍କେପ ମଧ୍ୟରେ କେତୋଟି ସିମେଣ୍ଟ କୁଣ୍ଡ ଓ ଅର୍ଦ୍ଧ ମୃତ ଫୁଲଚାରାକୁ ଦେଖି ଅକ୍ଲେଶରେ ହୃଦୟଙ୍ଗମ କରିପାରିବେ । ❐

(୧୯୮୩)

# ଅଇଲା ବରଷା ବଢ଼ି

ତିରିଶ ବର୍ଷ ତଳେ ପିଲାଦିନେ ପଢ଼ିଥିବା ଗୀତଟି ପୁଣିଥରେ ମୋ ପାଖକୁ ଫେରିଆସିଚି ଅଳ୍ପ କେତେଦିନ ହେଲା–

ଅଇଲା ବରଷା ବଢ଼ି–

ବାରିଆଡ଼େ ବେଙ୍ଗ ଛାଡ଼ିଲେ ରଡ଼ି,

ହେ ଭାଇମାନେ,

ଶୂନ୍ୟେ ଶୁଭେ ଘଡ଼ଘଡ଼ି,

ହେ ଭାଇମାନେ ।

'ଆସନ୍ତୁ ନଈବଢ଼ି ଦେଖିଯିବା ।'

ଅଗଷ୍ଟ ୩୧ ତାରିଖ ସକାଳେ ନିମନ୍ତ୍ରଣ କଲେ ହସି ହସି ଜଣେ ସାହିତ୍ୟିକ ବନ୍ଧୁ । ପାଗ ଉଜ୍ଜ୍ୱଳ । ଭୁବନେଶ୍ୱରରେ ଅନୁଭବ କରି ହେଉଥିଲା କିପରି ଗୋଟାଏ ଆନନ୍ଦ ଉତ୍ତେଜନା, ଉତ୍ସବର ବାତାବରଣ । ସ୍କୁଟରରେ ବାଣୀବିହାର ଗେଟ ପାଖକୁ ଯାଇ ଲକ୍ଷ୍ୟକଲୁ, ଧାଡ଼ିହୋଇ ଠିଆ ହୋଇଛନ୍ତି ପ୍ରକାଣ୍ଡ ପ୍ରକାଣ୍ଡ ମାଲବାହୀ ଟ୍ରକ୍ ସବୁ । ଟ୍ରକ୍ ନିକଟରେ ଇତସ୍ତତଃ ଦାଢ଼ିବନ୍ତ ପଗଡ଼ିବନ୍ତ ପ୍ରକାଣ୍ଡ ପଞ୍ଜାବୀ ପୁରୁଷଗଣ । ଭୁବନେଶ୍ୱର ଉପାନ୍ତ ରସୁଲଗଡ଼ ଅଞ୍ଚଳକୁ ଛୁଟିଛନ୍ତି ସମସ୍ତେ – ରିକ୍ସା, ସାଇକେଲ, ସ୍କୁଟର, କାର୍, ମଣିଷର ପାଦ । ନଈବଢ଼ି ଦେଖିବେ ।

ରାଜଧାନୀ ଭୁବନେଶ୍ୱରର ଶିକ୍ଷିତ ଚାକିରୀଧାରୀ ଅଧିବାସୀଗଣ ଟୁ-ଆର୍, ଥ୍ରି-ଆର୍, ସେଭେନ୍ -ଆର୍ ଖୋପମାନଙ୍କରୁ ବାହାରି ରସୁଲଗଡ଼ରେ ନଈବଢ଼ି ଦେଖୁଛନ୍ତି । ବିଲସବୁ ବୁଡ଼ିଯାଇଛି; ଅତଡ଼ା ଖାଉଚି ଗୋଳିଆ ହଳଦିଆ ପାଣି । କଟକ ଯିବାବେଳେ ନୂଆ ତିଆରି ହେଉଥିବା ଯେଉଁ କୋଠା କେତେଟାକୁ ମୁଁ ଲକ୍ଷ୍ୟକରି ଆସୁଥିଲି କେତେମାସ ହେଲା, ସେଗୁଡ଼ା ବୁଡ଼ିଯିବା ଉପରେ । ବଢ଼ି ପାଣିରେ ଭାସୁଚି ବିଲାତି ଦଳ, ମେଞ୍ଚା ମେଞ୍ଚା କନା, ଉପୁଡ଼ି ଯାଇଥିବା ଗଛ । ନଈବଢ଼ିରେ ଗାଁ ପରେ ଗାଁ ଧୋଇ ହୋଇଯାଏ; ଭାସି ଯାଉଥିବା ଚାଳମାନଙ୍କ ଉପରେ କରୁଣ ଚିତ୍କାର କରୁଥାନ୍ତି ବୁଢ଼ାବୁଢ଼ୀ, ଶିଶୁ । ମଲା ମଣିଷର ଦରସଢ଼ା ଫୁଲାଦେହ ଏଠି ସେଠି କୂଳରେ ଲାଗେ । ରସୁଲଗଡ଼ର ନଈବଢ଼ି ଦେଖି ଏସବୁ

ବୁଝି ହେଉ ନଥିଲା । ହେଇ, ଭାସିଆସୁଛି ସରୁ ସାପଟାଏ-ଦଳେ ଦେଖଣାହାରୀଙ୍କ କୁତୂହଳର ଅତିଶଯ୍ୟରେ ସାପଟା ବାଟଭାଙ୍ଗି ଅନ୍ୟ ବାଟେ ଯାଉଚି । ଆଉ ଗୋଟିଏ ଛୋଟିଆ ସାପକୁ ଦେଖଣାହାରୀମାନେ ବାଡ଼ିରେ ମାରିବାରେ ଲାଗିଛନ୍ତି । ନଈବଢ଼ି ଆସିବାରେ ତାର ବା କି ଦୋଷ ?

କୁଆଖାଇ ପୋଲ ଉପରେ ଦିଶୁଚି ହଜାର ହଜାର କଳାମୁଣ୍ଡ । ଛତାତଳେ (ମେଘ ହଠାତ୍ କୁଣ୍ଡା ଝାଡ଼ିବାକୁ ଆରମ୍ଭ କରିଛି) ଚାଲିଛନ୍ତି ସ୍ୱୟଂସଂପୂର୍ଣ୍ଣ ବଙ୍ଗାଳୀ ପରିବାରଟିଏ । ମଧ୍ୟବୟସ୍କ ପୁରୁଷ, ସ୍ତ୍ରୀ, ଦୁଇଟି ଛୋଟ ଝିଅ । 'ପ୍ରତାପନଗରୀଠାରୁ କଟକ ଯିବାକୁ ରାସ୍ତା ବନ୍ଦ । ଏଇତ ନିଜେ ଦେଖି ଆସୁଚି ।' ଖଦଡ଼ ଧୋତି-ପଞ୍ଜାବୀ ପରିହିତ ଶ୍ମଶ୍ରୁଧାରୀ ବ୍ୟକ୍ତିଜଣେ ଅନ୍ୟମାନଙ୍କୁ ଶୁଣେଇ ଶୁଣେଇ କହୁଛନ୍ତି । ଦିଶୁଛନ୍ତି ସାମାନ୍ୟ ବିଚଳିତ କିନ୍ତୁ ନେତୃଜନସୁଲଭ ଠାଣି । ସେ ହେଉଛନ୍ତି ଅମୁକ, ଲୋକଦଳର ସମ୍ପାଦକ । କେହି ଜଣେ ଜନତାକୁ ଯୋଗାଇ ଦେଉଛି ଅଯାଚିତ ତଥ୍ୟ । ସେକଡେ ଧୋତି ଟେକି ଟେକି ପାଦ ଚାପିଚାପି ଯେ ଚାଲିଛନ୍ତି, ସେ କୌଣସି ସରକାରୀ ପତ୍ରିକାର ସମ୍ପାଦକ । ତାଙ୍କ ପଛେ ପଛେ ଶଙ୍କିତ ତାଙ୍କର ଅଧସ୍ତନମାନେ । ଅଳ୍ପ ଦୂରରେ ଅପେକ୍ଷାମାଣ ତାଙ୍କର ଜିପ୍ ଓ ଡ୍ରାଇଭର୍ । ଫଟୋଗ୍ରାଫର୍ କାହିଁ ? ସମ୍ପାଦକଙ୍କ ବନ୍ୟାଞ୍ଚଳ ପରିଦର୍ଶନ ସମ୍ବାଦ କ'ଣ ତେବେ ପତ୍ରିକାରେ ପ୍ରକାଶିତ ହେବ ନାହିଁ ?

ଆକସ୍ମିକ ସାକ୍ଷାତ୍ ହେଉଛି ବନ୍ଧୁମାନଙ୍କ ସହିତ । କହୁଛନ୍ତି ଭୂଗୋଳବିତ୍..... 'କ୍ୟାମେରାଟା ଛାଡ଼ି ଆସିଛି ଭୁଲରେ; ବଢ଼ିଆ କଲରଡ୍ ଫିଲିମ୍ ପକାଇଥିଲି ।' ଦୁଃଖ କରୁଛନ୍ତି ପ୍ରବୀଣ ଓଡ଼ିଆ ଭାଷାବିତ୍, 'ଧୋଇୟା ଅଞ୍ଚଳରେ ଆମ ଘର ସିନା, ହୀରାକୁଦ ତିଆରି ହେବା ଆଗରୁ ଆମେ ବାଲିବନ୍ଧ ଦେଖି ନଥିଲୁ ।' ଦୀର୍ଘନିଃଶ୍ୱାସ ପକାଉଛନ୍ତି ସେ, 'ଆହା, କେତେପୋଥି ଭାସି ନ ଯିବ ଏ ବନ୍ୟାରେ !'

'୧୯୮୦ରେ ବାମନ ଦ୍ୱାଦଶୀ ଦିନ ଆସିଥିଲା ବଢ଼ି । ଆଜି ବି ଦ୍ୱାଦଶୀ ।' ହାଫ୍ ପ୍ୟାଣ୍ଟ୍ ହାଫ୍ ସାର୍ଟ୍ ପିନ୍ଧିଥିବା ପିଲାଟିଏ ସମ୍ବାଦଟି ଘୋଷଣା କରି କରି ଆମ ପାଖେ ପାଖେ ଚାଲିଛି । ସ୍କୁଲଛୁଟି, ଚଞ୍ଚଳ ତାର ଗତିବିଧ । ଫୁଲପ୍ୟାଣ୍ଟକୁ ଆଣ୍ଠୁଯାଏଁ ମୋଡ଼ିଥିବା ଏମ.ଏ. ଛାତ୍ର ଜଣେ ମୋତେ ଦେଖି ନମସ୍କାର କରୁଛି । ତାର ଆଜି ୟୁନିଭର୍ସିଟି ପରୀକ୍ଷା ଥିଲା । 'ପରୀକ୍ଷା ଅନିର୍ଦ୍ଦିଷ୍ଟ କାଳ ପାଇଁ ଘୁଞ୍ଚିଲା, ସାର୍ ।' ସେ ଦିଶୁଚି ଆଶ୍ୱସ୍ତ, ଭାଗ୍ୟବାନ୍ । X X X

ବରଷା ବଢ଼ି ଆସିଲେ ବେଙ୍ଗମାନଙ୍କ ରଡ଼ି ସତରେ ଖୁବ ଜୋରରେ ଶୁଣାଯାଏ । 'ବନ୍ୟାରେ ବହୁ ଲୋକଙ୍କର ମୃତ୍ୟୁ ଆଶଙ୍କା', 'ପୁଣି ସେହି

ଦଲେଇଘାଇ ଭାଙ୍ଗିବାର କରାଳ ଦୃଶ୍ୟ', 'ଅଶୀହଜାର ବର୍ଗ କିଲୋମିଟର ଅଞ୍ଚଳ ବନ୍ୟା ପ୍ଳାବିତ: କୋଟିକରୁ ଊର୍ଦ୍ଧ୍ୱ ଲୋକ ବିପନ୍ନ,' 'ପ୍ରବଳ ବର୍ଷାରେ ବନ୍ୟା କ୍ଲିଷ୍ଟ ଲୋକଙ୍କ ଦୁର୍ଦ୍ଦଶାର ସୀମା ଟପିଲା', 'ଖାଇବାକୁ ନାହିଁ,' 'ବାଙ୍କୀରେ ବନ୍ୟାର ଧ୍ୱଂସଲୀଳା, 'ଭାର୍ଗବୀ, ଦୟା ଓ କୁଶଭଦ୍ରାରେ ପୁଣି ପ୍ରବଳ ବନ୍ୟା 'ଚାଉଳ, ଗହମ, ଅଟା, କିରୋସିନୀ ମିଳୁ ନାହିଁ,' 'ମଣିଭଦ୍ରାରେ ଆଉ ଏକ ବନ୍ଧ ତିଆରି ହେବ, ଯୁଦ୍ଧକାଳୀନ ଭିତ୍ତିରେ ସରକାରୀ ସାହାଯ୍ୟ ଆଦି ଯାଉଛି' ।

କିନ୍ତୁ ବରଷା ବଢ଼ି ଛାଡ଼ିଲେ ବାରିଆଡ଼େ ଆଉ ବେଙ୍ଗମାନଙ୍କ ରଡ଼ି ଶୁଭେନାହିଁ । ଶୀତଦିନେ ବେଙ୍ଗମାନେ ମାଟିତଳେ ଆଖିମୁଦି ଶୋଇ ରହନ୍ତି । ପୁଣି ବରଷା ବଢ଼ି ଆସିଲା ଯାଏଁ ।

ବେଙ୍ଗମାନଙ୍କ ରଡ଼ି ସାଙ୍ଗକୁ ଶୂନ୍ୟରେ ଘଡ଼ଘଡ଼ି ମଧ୍ୟ ଠିକ୍ ଶୁଭେ ବର୍ଷାକାଳରେ । ବ୍ୟୋମଯାନ ଓ ହେଲିକପ୍‌ଟର୍‌ମାନ ଆକାଶ ମାର୍ଗରେ ଚକାଭଉଁରୀ ଖେଳି ମନ୍ତ୍ରୀ, ଅଫିସର ଓ ସେମାନଙ୍କ ପିଲା କବିଲାଙ୍କୁ ନଈବଢ଼ି ଦେଖାନ୍ତି । ଶୂନ୍ୟରୁ ଖାଦ୍ୟ ପୁଡ଼ିଆମାନ ପକାନ୍ତି ମାରଓ୍ୱାଡ଼ି, ଶିଳ୍ପପତି ଓ ବଦାନ୍ୟ ବ୍ୟକ୍ତିମାନେ । ଖାଦ୍ୟପୁଡ଼ିଆ ପାଇଁ ଭୋକିଲା କଙ୍କାଳମାନେ ପରସ୍ପର ଭିତରେ ଝଗଡ଼ା କରନ୍ତି ଓ ପୁଲିସ ପହଞ୍ଚିଯାଏ ଲାଠିଚାର୍ଜ୍ କରିବାକୁ । ନ ହେଲେ ଆଇନଶୃଙ୍ଖଳା ଭାଙ୍ଗି ପଡ଼ିବ ଯେ । X X X

ଭୁବନେଶ୍ୱରର କୌଣସି ଗୋଟିଏ କୋଠା ଘରେ କଫି ଶୋଷୁ ଶୋଷୁ କହୁଥିଲେ ଜଣେ ବିଶିଷ୍ଟ ପଦସ୍ଥ ବ୍ୟକ୍ତି, 'ଏ ବର୍ଷ ଫ୍ଲଡ୍ କାହିଁ ? ଖାଲି ଖବରକାଗଜ ବାଲାଙ୍କ ପ୍ରଚାର । ନଈରେ ପାଣି ଆସିଛି, ପାଣି ଛାଡ଼ିଗଲା । ଫ୍ଲଡ୍ କାହିଁ ?'

ତାଙ୍କୁ ସମର୍ଥନ କରି ଜୋରରେ ମୁଣ୍ଡ ହଲାଉଥାନ୍ତି ତାଙ୍କର ଅନ୍ୟତମ ବିଶିଷ୍ଟ ଖୋସାମତ୍‌କାରୀ । ହଠାତ୍ ନିଦରୁ ଉଠି ପଡ଼ିବା ପରି ବିଲି-ବିଲଉଥାନ୍ତି ସେ, 'ସାର୍, ଫ୍ଲଡ୍ କାହିଁ ? ରେଳଗାଡ଼ିସବୁ ପୁଣି ଚାଲିଲାଣି ଯେ ।'

'ଓହୋ,' ବିରକ୍ତି ପ୍ରକାଶ କରୁଥାନ୍ତି ପଦସ୍ଥ ବ୍ୟକ୍ତି, 'ରେଳଗାଡ଼ି ସବୁ କେମିତି ଚାଲିଲା ଜାଣ ? ରେଳଗାଡ଼ି ସବୁ ନ ଚାଲିବାରୁ ଟେଲିଫୋନ୍‌ରେ ମୁଁ ଗାଳିଦେଲି ବଡ଼ ବଡ଼ ଅଫିସର୍‌ମାନଙ୍କୁ । ସେମାନଙ୍କ ନାମ ଅବଶ୍ୟ ମୁଁ ପ୍ରକାଶ କରିବି ନାହିଁ । ମୋଠୁ ଗାଳି ଶୁଣିବା ପରେ ସେମାନେ ପୁଣି ରେଳଗାଡ଼ି ସବୁ ଚଳାଇଲେ ।'

ବିଶିଷ୍ଟ ଖୋସାମତ୍‌କାରୀ ପୂର୍ବଠାରୁ ଆହୁରି ଜୋରରେ ମୁଣ୍ଡ ହଲାଉଥାନ୍ତି । ❐

(୧୯୭୯)

# ବନ୍ୟା, ନୁହାଡ଼ି ଓ ଶୁକଦେବ ନାୟକ

ଶୁକଦେବ ନାୟକ ଲୋକଟି ଡ଼େଙ୍ଗା, ମେଢ଼ିଆ, ଟିକିଏ ବଙ୍କା । ପୀତାମ୍ବର ସ୍ୱାଇଁଙ୍କ କହିବା ଅନୁସାରେ, ତାର ଛଅଟି ଝିଅ, ବଢ଼ିରେ ଘର ଭାଙ୍ଗି ଯାଇଚି, କିଛି ବୋଲି କିଛି ନାହିଁ । ମୂଳରୁ ଶେଷଯାଏଁ ମୋ ପାଖକୁ ଲାଗି ଠିଆହୋଇ ସେ ତା ଦୁଃଖ କହୁଥାଏ । ଆମ ମାଟାଡ଼ର୍ ଅଟକିଥାଏ କଟକ ଜଗତସିଂହପୁର ରାସ୍ତାରେ ଠାଏ, ଗୋଟିଏ ଓସ୍ତ ଗଛମୂଳେ । ଅଞ୍ଚଳଟିର ନାଁ ନାଲିବର । ୧୪ ତାରିଖ ସେପ୍‌ଟେମ୍ବର । ଆମେ ଯାଇଥାଉ ରିଲିଫ୍ ବାଣ୍ଟି ।

ଆମେ ଯେଉଁଠି ଗାଡ଼ି ଅଟକାଇ ଥାଉ, ତା ଆଗରେ ବଜାର, ଅଳ୍ପ ଦୂରରେ ବଢ଼ିରେ ଭାସିଯାଇଥିବା ଛୋଟ ଛୋଟ ଗାଁଆସବୁ । ଜଣେ ଦି'ଜଣ ଲୋକ ଓସ୍ତଗଛ ମୂଳେ ଠିଆ ହୋଇଥିଲେ । ଜଣେ ଛେଳି ଜଗୁଆଳି, ଅଳ୍ପ ଦୂରରେ ଛଅ ସାତଟି ଛେଳି । ଆଉ ଜଣେ ସୁସ୍ଥ ସବଳ ପୀତାମ୍ବର ସ୍ୱାଇଁ । ଆମେ ଗାଡ଼ି ଅଟକାଇ ତଳକୁ ଓହ୍ଲାଇବା ମାତ୍ରେ ପୀତାମ୍ବର ବର୍ଣ୍ଣନା କରିବାରେ ଲାଗିଲେ ନାଲିବର ଅଞ୍ଚଳର ଦୁଃଖଦୁର୍ଦ୍ଦଶା । ପାଖରେ ଛଅଟି ମୌଜା– ଏରଡ଼ଙ୍ଗ, ମୁଣ୍ଡିତରା, ନାଲିବର, ଖେନାବାଡ଼ି, ଭଦ୍ରପୁର, ମସ୍ତାଡ଼ିହ । ଭୁସକିନା ମାଡ଼ିଆସିଲା ହଂସୁଆ ନଈର ପାଣି, ପାଣି ଗର୍ଜନରେ ମଣିଷଙ୍କ କଥାବାର୍ତ୍ତା ବି ଶୁଭିଲା ନାହିଁ ।

'–ଦି'ଟା ଇଟା ଘରକୁ ଛାଡ଼ି ସବୁଘର ଭୁଷୁଡ଼ି ପଡ଼ିଲା । ପାଣି ଶବ୍ଦ ଶୁଣି ଲୋକେ ନଈବନ୍ଧ ଉପରକୁ ପଳାଇଗଲେ । ଅନେକ ଗୋରୁ ମରିଛନ୍ତି, ଜଣେ ମଣିଷ ବି । ତରଡ଼ାପଡ଼ା ପାଖରେ ଦଳେ ଲୋକ ଭେଡ଼ା ମୁହଁରେ ଭାସିଗଲେ । ସେମାନଙ୍କର କ'ଣ ହେଲା କେଜାଣି ? ତାରପୋଲ ପାଖରେ ରିଲିଫ୍ ବଣ୍ଟା ହୋଇଥିଲା । ତେବେ ରିଲିଫ୍ ତ ଅଟକି ଯାଉଚି ବାବୁଭାୟାଙ୍କ ପାଖେ, ଲୋକଙ୍କ ପାଖରେ ବା ପହଞ୍ଚୁଚି କେତେ ?'

ଦଳେଇ ଘାଇ ଭାଙ୍ଗିଲା ଅଗଷ୍ଟ ୩୧ରେ । ଆମେ ରିଲିଫ୍ ନେଇ ଗଲାବେଳକୁ ମୋଟାମୋଟି ପାଣି ଛାଡ଼ି ଯାଇଚି । ରାସ୍ତାକଡ଼ର ଗଛ ଗଣ୍ଡିମାନଙ୍କରେ ଚୂନରେ ଦିଆଯାଇଥିବା ଚିହ୍ନରୁ ବୁଝିହେଉଛି, ରାସ୍ତା ଉପରେ ମୋଟାମୋଟି ଛଅ ସାତଫୁଟ

ବର୍ଷିପାଣି ଚାଲିଥିଲା । ବିଶ୍ୱାସ ହେଉନାହିଁ । ରଘୁନାଥପୁରରୁ ପୁଳସାହି ଯାଏଁ ରାସ୍ତା ବି' କଡ଼େ ସବୁ ଧାନଗଛ ଷଡ଼ି ଯାଇଛି ।

ଓଡ଼ିଶାର ଭାତହାଣ୍ଡି ପୋଡ଼ି ଯାଇଚି । କୁଳସାହି ଡେ଼ଇଁଲା ପରେ କେଉଁଠି କେମିତି ଅରାଏ ଲେଖାଏଁ ସାବୁଜା ଜମି ଆଖିରେ ପଡ଼ୁଚି । ଜଣେ ବନ୍ଧୁଙ୍କ ଭାଷାରେ, ସେ ଜମିସବୁର ଧାନ 'ମିଳେଇ ଯିବ' । ପୀତାମ୍ବରଙ୍କ ଭାଷାରେ, 'କଅଁଳ ଧାନ, ଥୋଡ଼ି ବାହାରି ଥିଲା, ସବୁ ଗଲା । ସହଜେ ନିଅଣ୍ଟିଆବେଳ । କଖାରୁ, ସଜନା, କଦଳୀ ମଞ୍ଜାରେ ଚଳିବା କଥା । ଏଇଠି ଆମର ଆଉ ରହିବା କଥା ନୁହେଁ । ନଈ ତଳ ଆମ ଜମିଠୁ କୋଡ଼ିଏ ଫୁଟ ଉଚ୍ଚ । ୧୯୫୫ ବଢ଼ିଠୁ ଆହୁରି ପାଞ୍ଚଫୁଟ ଉଚ୍ଚ ପାଣି ଆସିଲା ଏଥର । ସମସ୍ତେ ଭାବିଥିଲେ ୧୯୫୫ ବଢ଼ି ହେବ । ହେଲା ତା'ଠୁ ବଳି । ଆଉ ଆମେ ଏଠି ଘରକରି ରହିବୁ କ'ଣ ? ଆମର ମତ, ସରକାର କଟକ ବଞ୍ଚାଇବାକୁ ଦଳେଇଘାଇ ଭାଙ୍ଗିଦେଲେ ।'

ଆମେ ରିଲିଫ୍ ବାଣ୍ଟିବା ଆରମ୍ଭ କଲାବେଳକୁ ଆମ ମାଟାଡ଼ର୍ ଚାରିକଡ଼େ ମେଳାଟିଏ । ଷାଠିଏ କି ସତୁରୀ ପୁରୁଷ ସ୍ତ୍ରୀ । ଯେଉଁମାନେ ଆସିନଥାନ୍ତି, ସେମାନଙ୍କୁ ଖୋଜୁଥାନ୍ତି ସେମାନଙ୍କ ବନ୍ଧୁବାନ୍ଧବମାନେ । ଆରେ ରିଲିଫ ବଣ୍ଟା ହେଲାଣିରେ'– ଚିତ୍କାର କରି ଦଉଡ଼ିଥାଏ ପିଲାଟିଏ । ରିଲିଫ ବଣ୍ଟାରେ ଯା ଭିତରେ ଅଭ୍ୟସ୍ତ ହୋଇସାରିଛନ୍ତି ସମସ୍ତେ । ଆମ କହିବା ଅନୁସାରେ ସମସ୍ତେ ଅବଶ୍ୟ ଧାଡ଼ି ହୋଇ ଠିଆ ହୋଇଥାନ୍ତି । କିନ୍ତୁ ମୁଖସ୍ଥ କଲାପରି ଅନର୍ଗଳ ଗପିବାକୁ ଆରମ୍ଭ କରିଥାନ୍ତି ସେଇ କେତୋଟି କଥା । ସେମାନଙ୍କର ସବୁ ଭାଙ୍ଗିଯାଇଚି, ରିଲିଫ୍ ଜିନିଷ ଥିଲାବାଲାମାନେ ନେଇ ଯାଉଛନ୍ତି, ସେମାନଙ୍କ ପାଖରେ କିଛି ପହଞ୍ଚୁ ନାହିଁ, ଘରେ ସେମାନଙ୍କର ବୁଢ଼ୀମା, ରୋଗୀଣା ପିଲା, ଇତ୍ୟାଦି ।

ଶୁକଦେବ ନାୟକ ମୂଳରୁ ଶେଷଯାଏଁ ମୋ ପାଖକୁ ଲାଗି ଠିଆ ହୋଇ ତା ଦୁଃଖ କହୁଥିଲେ । ରିଲିଫ୍ ବଣ୍ଟାସାରି ଆମେ ମାଟାଡ଼ୋରରେ ବସିବା ବେଳକୁ କହିଲା ସେ, 'ବାବୁ, ମତେ ତ କିଛି ମିଳିଲା ନାଇଁ !' ମୁଁ ବିରକ୍ତ ହେଲି, 'ତମକୁ ଦିଆଯାଇଚି । ପୁଣି କାହିଁକି ମାଗୁଚ ?' ସେ ରିଲିଫ୍ ନେବା ଯେ ମୁଁ ଲକ୍ଷ୍ୟ କରିଚି, ହୁଏତ ସେ ଜାଣି ନଥିଲା । ଅପ୍ରସ୍ତୁତ ହେଲା । ନିରୀହ ବ୍ୟକ୍ତି ପରି ଚୁପ୍‌ଚାପ ଚାଲିଗଲା ଦୂରକୁ । X X X

ନାଲିବର ଠାରୁ ପ୍ରାୟ ପଚିଶି ମାଇଲ୍ ଦୂରରେ ଟାଙ୍କପାଣି ଗରେଇ ରୋଡ୍‌ରେ ହରିଜନ ଗାଁ ନୂଆଡ଼ି । ବଗୁଲା ଘାଇ ଭାଙ୍ଗି କାଠଯୋଡ଼ି ନଈର ପାଣିରେ ଗାଁଆଟି ଭାସିଯାଇଚି । ଗାଁଆରେ ଉଣିଶିଟି ଘର । ଦଶିପୁରରେ ଚଉଦ ଘର । ରୂପାଖଣ୍ଡିରେ ଦଶଘର । ତିନିଖଣ୍ଡ ଗାଆଁର ଲୋକେ ରିଲିଫ ନେବା ପାଇଁ ଉଠି ଆସିଥିଲେ ଗରେଇ ଗାଁଆ ନିକଟକୁ । ଢ଼ିପ ଜାଗାଟି ଉପରେ ଆମ୍‌ପାଇଁ ଶୃଙ୍ଖଳିତ ଭାବରେ ଅପେକ୍ଷା କରିଥିଲେ । ଚାରିଆଡ଼େ ବିଲଭର୍ତ୍ତି ପାଣି । ଲୋକମାନଙ୍କ ମଧ୍ୟରୁ ସମସ୍ତେ ମଳିକ, ଜଣେ ଦି'ଜଣ ଜାଣ୍ଡି । କେହି ଜଣେ କହିଲା, 'ନିଜେ ଆଇଚ ଭଲହେଲା । ପର ଜରିଆରେ ଦେଲେ ପର ନେବେ ।'

ଲୋକେ ଧୋତି, ଶାଢ଼ୀ, ଗାମୁଛା ନେଲେ, କାନିରେ ବାନ୍ଧିନେଲେ ବିସ୍କୁଟ୍ । ରିଲିଫ୍ ବାଣ୍ଟି ଆମେ ଫେରିଲୁ ଗରେଇ । ସେଇଠି ଅପେକ୍ଷା କରିଥିଲା ଆମ ମାଟାଡ଼ୋର । ବହୁଲୋକ କିନ୍ତୁ ଆମ ପଛେ ପଛେ ଗୋଡ଼େଇଥାନ୍ତି । ନେହୁରା ହୋଇ ମାଗୁଥାନ୍ତି ଆଉ କିଛି । ମାଟାଡ଼ୋର ଛାଡ଼ିଲାବେଳକୁ ମାଟାଡ଼ୋର ଚାରିପାଖେ ମଣିଷ ଭିଡ଼, କାଚ ଝରକା ଭିତରେ ଆମ ଆଗକୁ ଲମ୍ବି ଆସିଲା ଅନେକ ହାତ । ରିଲିଫ ବାଣ୍ଟି ସାରିଲା ପରେ ସବୁଠି ସେଇ ଏକାକଥା– ପଛେ ପଛେ ଗୋଡ଼ାଇଥିବା ମଣିଷ ଦଳ– । 'ଆଉକିଛି ଦିଅନ୍ତୁ ।' X X X

ଚଳିତ ବନ୍ୟାରେ ଓଡ଼ିଶାର ଅର୍ଥନୀତିକ ମେରୁଦଣ୍ଡ ଭାଙ୍ଗିଯାଇଚି ବୋଲି କୁହାଯାଉଛି । କଥାଟି ନିଶ୍ଚିତ ଭାବରେ ସତ । ଗାଁଆ ସବୁ ଭାସିଯାଇଚି, ଧାନଜମିରେ ବାଲି ଚରିଯାଇଚି । କିନ୍ତୁ ଏଇ ଦୁର୍ବିପାକର ଉତ୍ତର ନୁହେଁ– ରିଲିଫ୍ ବା ସରକାରୀ ସାହାଯ୍ୟ । ରିଲିଫ୍ ବା ସରକାରୀ ସାହାଯ୍ୟର କିଛି ଆବଶ୍ୟକତା ଅଛି ନିଶ୍ଚୟ । କିନ୍ତୁ ତାର ପରିଣାମରେ ଯଦି ଲୋକେ ପରିଣତ ହୁଅନ୍ତି ଭିକାରୀରେ, ବାବୁମାନଙ୍କ ଆଗରେ ହାତ ପତାଇବାର ନୂତନ ଅଭ୍ୟାସଟି ଆହରଣ କରନ୍ତି, ତେବେ ତାହାହିଁ ହେବ ବନ୍ୟାର ସବୁଠାରୁ ଭୟଙ୍କର କ୍ଷତି । ଘର ଖଣ୍ଡେ ଭାଙ୍ଗିଗଲେ ଘର ତିଆରି କରିହେବ, ଜମିରେ ପୁଣି ଫଳାଇ ହେବ ଫସଲ, କିନ୍ତୁ ଆତ୍ମବିଶ୍ୱାସ ଓ ଅହମିକା ଥରେ ହରାଇ ବସିଲେ ଯଥାର୍ଥରେ ଭାଙ୍ଗିଯିବ ଲୋକଙ୍କ ମେରୁଦଣ୍ଡ ।

ଚଳିତ ବନ୍ୟାରେ ଲୋକଙ୍କ ଆତ୍ମବିଶ୍ୱାସ ଓ ଅହମିକାରେ ଦାରୁଣ ଆଘାତ ଲାଗିଛି । ନାନପୁର ନିକଟରେ ନଈବନ୍ଧରେ ପଲାମାରି ରହିବା ଲୋକଙ୍କ ଭିତରେ

ରିଲିଫ୍ ବାଣ୍ଟିବା ବେଳେ କହିଲା ଜଣେ, 'ଆଜ୍ଞା, ରିଲିଫ୍ ପାଇବେ ବୋଲି ଥିଲାବାଲାମାନେ ବି ମିଛ ପଲା ତିଆରି କରି ତା ଭିତରେ ବସିଛନ୍ତି ।'

ତଥାପି ଏଇ ରିଲିଫ୍ ଆଶାୟୀ ଲୋକଙ୍କ ଭିତରେ ଅଛନ୍ତି ଜଣେ ଜଣେ, ଯେଉଁମାନେ ନିଜ ଆତ୍ମସମ୍ମାନବୋଧ ହରାଇ ନାହାନ୍ତି । ସେମିତି ଜଣେ ଧୀରେନ୍ଦ୍ର ଖଣ୍ଡୁଆଳ । ନାନପୁର ନିକଟରେ ନଈବନ୍ଧ ଉପରେ ଟର୍ଚ୍ଚ୍ ଆଲୁଅ ଦେଖାଇ ମୋତେ ରିଲିଫ୍ ବାଣ୍ଟିବାରେ ସାହାଯ୍ୟ କଲେ । ହସ ହସ ମୁହଁ । ନିଜେ କୌଣସି ରିଲିଫ୍ ନେଲେ ନାହିଁ ।

ଚଳିତ ବନ୍ୟା ଧୀରେନ୍ଦ୍ର ଖଣ୍ଡୁଆଳଙ୍କ ପରି ବ୍ୟକ୍ତିଙ୍କର କି କ୍ଷତି କରି ପାରିବ ? ☐

(୧୯୭୯)

# ବଢ଼ିପାଣିର ଧର୍ମ

ବିଶ୍ୱନାଥ ସାହୁଙ୍କ ଆଖି ଆଗରେ ମହାନଦୀର ଅକାତକାତ ପାଣି ଘର ପରେ ଘର ଭସାଇ ନେଇଗଲା, ତାଡ଼ି ନେଇଗଲା ଠାକୁରଙ୍କ ଦେଉଳ, ଉପାଡ଼ି ପକାଇଲା ଶହ ଶହ ବର୍ଷର ପୁରୁଣା ବର ଓ ଓସ୍ତଗଛ । ଏପରି କରାଳ ଦୃଶ୍ୟ ନିଜ ଆଖିରେ ଦେଖି ବି ସେ ମୋଟେ ବିଚଳିତ ନୁହନ୍ତି । ସେପ୍‌ଟେମ୍ବର ୨୮ ତାରିଖରେ ଆମ ଆଗରେ ବଢ଼ିର ମର୍ମନ୍ତୁଦ ଅନୁଭୂତି ବର୍ଣ୍ଣନା କଲାବେଳେ ସେ ଟିକିଏ ବି ବିଚଳିତ ବା ବିମର୍ଷ ଦିଶୁ ନଥିଲେ ।

ସାହୁଙ୍କ ଘର ଶିମିଳିପୁର ନଦୀକୂଳ ସାହୀରେ–ବାଙ୍କୀରେ ସବୁଠାରୁ ଭୟଙ୍କର ଘାଇ ହୋଇଥିଲା ତାଙ୍କରି ଗାଁଆରେ । ସେ ନିଜେ ଜଣେ ଜମିଦାର; ବେଶ ଉଚ୍ଚ ଜମି ଉପରେ ତାଙ୍କର ପ୍ରକାଣ୍ଡ ପୁରୁଣା ଆଠ ବଖରିଆ କୋଠାଘର । ବାଡ଼ି ବଗିଚାର ଆୟତନ ସାତ ଏକର । ବଢ଼ି ପାଣିରେ ତାଙ୍କର ତଳମହଲା ବୁଡ଼ି ଯାଇଥିଲା । ସେ ଓ ତାଙ୍କ ଗ୍ରାମର ପଚାଶ ଜଣ ଲୋକ ତାଙ୍କ ଛାତ ଉପରେ ଆଶ୍ରୟ ନେଇ ବଞ୍ଚି ଯାଇଥିଲେ । ସାହୁଙ୍କ ଭାଷାରେ, 'ଆମ ପୂର୍ବପୁରୁଷ ଏ ଘର ଏମିତି ତିଆରି କରିଥିଲେ ଯେ, କଟକ ବୁଡ଼ିଯିବ ପଛେ ଏ ଘର ସେମିତି ଥିବ ।' ଏ ବଢ଼ିରେ କିନ୍ତୁ ତାଙ୍କ ଘର ବୁଡ଼ିଯାଇଥିଲା । ଭୁଷୁଡ଼ି ପଡ଼ି ନଥିଲେ ବି ପିଣ୍ଡା ଓ କାନ୍ଥର ଠାଏ ଠାଏ ଫାଟି ଆଁ କରିଥିଲା ।

ଶିମିଳିପୁର ଗାଁଆରେ ବର ଓସ୍ତ ଗଛ ଛାଇରେ ଠିଆହୋଇ ଗାଁ ଲୋକଙ୍କ ସହିତ ଆମେ ବଢ଼ି ବିଷୟରେ ଆଲୋଚନା କରୁଥିଲୁ । ଅବଧୂତ ସ୍ୱାଇଁ ଉତ୍ତେଜିତ ଭାଷାରେ ବର୍ଣ୍ଣନା କରୁଥିଲେ ଅଗଷ୍ଟ ୩୧ ତାରିଖ ଅର୍ଥାତ୍ ଘାଇ ଭାଙ୍ଗିବା ଦିନର ଅନୁଭୂତି । ତାଙ୍କ ପାଖରେ ଧୋତି ଓ ଧଳା ହାଫ୍ ସାର୍ଟ୍ ପିନ୍ଧା, ସାଇକେଲଟିଏ ଧରି ଚୁପ୍‌ଚାପ୍ ଠିଆ ହୋଇଥିବା ବ୍ୟକ୍ତିଙ୍କୁ ଦେଖାଇ କହିଲେ ସେ, 'ଏଇ ମହାପୁରୁଷଙ୍କ ଯୋଗୁଁ ଆମେ ବଞ୍ଚିଗଲୁ । ବଢ଼ିରେ ଘର ବୁଡ଼ିଗଲାବେଳେ କାନିରେ ସେ ବାନ୍ଧିଲେ ଚେନାଏ ସୁନା । କହିଲେ, ବଞ୍ଚି ରହିଲେ ସେଇ ସୁନା ବିକିଭାଙ୍ଗି ଖାଇବା । ନଇଲେ ନାହିଁ ।'

ସେହି 'ମହାପୁରୁଷ' ଥିଲେ ବିଶ୍ୱନାଥ ସାହୁ । ଟିକିଏ କଷ୍ଟରେ ଢ଼ାଲୁ ଚଢି (ବଢ଼ିରେ ପାହାଚ ସବୁ ଭାଙ୍ଗି ଯାଇଛି) ଆମେ ତାଙ୍କ ଘର ବୁଲି ଦେଖିବାକୁ ଗଲୁ ।

ବିଲୁପ୍ତ ପ୍ରାୟ ଜମିଦାର ଶ୍ରେଣୀଟିର ଅନ୍ୟତମ ଶେଷ ପ୍ରତିନିଧି ବିଶ୍ୱନାଥ ସାହୁ । ଘର ଆଗରେ ଦୋଳବେଦୀ; ଲମ୍ବା ସିମେଣ୍ଟ ପିଣ୍ଡା ଉପରେ କେତେଟା ଖଗଡ଼ ଚକ; ଚୁପ୍‌ଚାପ କାହାକୁ ଆଉଜି ବସିଥିବା ଦି'ତିନି ଜଣ ମୂଲିଆ । ଘର ଭିତରେ ପଚାଶ ବର୍ଷ ତଳର ପ୍ରକାଣ୍ଡ ପ୍ରକାଣ୍ଡ କାଠ ସିନ୍ଦୁକ, ପଥରକୁଣ୍ଡ, ଢ଼ିଙ୍କି, ଯନ୍ତା, ଢପା, ଡେଣ୍ଡା । ଦୁଇଟା ଅମାର– ଗୋଟିଏ ଜଡ଼ା, ରାଶି, ସୋରିଷ ପାଇଁ; ଆଉ ଗୋଟିଏ ଚାଉଳ ପାଇଁ । ଗୁହାଳରେ ଧାଡ଼ିଏ ଗାଈ । ଅଗଣାରେ ଦେଉଳ– ଜଣେ ଟହଲିଆ ଠାକୁରଙ୍କ ଅର୍ଚ୍ଚନା ପାଇଁ ନିଯୁକ୍ତ ।

ସାହୁ ଆମକୁ ତାଙ୍କ ଘର ବୁଲି ଦେଖାଇବା ବେଳେ ତାଙ୍କ ପୂର୍ବପୁରୁଷଙ୍କ ଗୌରବ କାହାଣୀ ଶୁଣାଇଲେ । ସେମାନେ ଥିଲେ ଜମିଦାର, କିନ୍ତୁ ଗରିବଗୁରୁବାଙ୍କ ତଣ୍ଟି ଚିପି ଧନୀ ହୋଇ ନଥିଲେ । ସେଥିପାଇଁ ଏବେ ବି ଠାକୁରଙ୍କ ଦୟାରୁ ସେ ବଞ୍ଚିତ ହୋଇନାହାନ୍ତି । ଏତେ ବଡ଼ ବଢ଼ିରେ ତାଙ୍କ ଘର ଭାଙ୍ଗିଲାନାହିଁ । ତାଙ୍କ ଦେଉଳରେ ପୂଜା ପାଉଥିବା ପ୍ରତିମାମାନେ ଅବଶ୍ୟ ଭାସିଯାଇଥିଲେ । କିନ୍ତୁ ଦୁଇ ମୂର୍ତ୍ତି ମିଳିଲେଣି; କେବଳ ବିଜୟ ପ୍ରତିମା ମିଳି ନାହାନ୍ତି । ନିଶ୍ଚୟ ମିଳିବେ । ଠାକୁରଙ୍କ ଦୟା ନଥିଲେ ମୂର୍ତ୍ତିମାନେ ମିଳିଥାନ୍ତେ ?

ସାହୁଙ୍କ ମତରେ, 'ଲୋକେ ଧର୍ମହରା ହେଲେଣି । ଏ ବଢ଼ି ହେଲା, ଭଲ ହେଲା । ଲୋକଙ୍କ ଚେତାପଶିବ । ଗୋଲଖ ରାଉତ ଲକ୍ଷେ ଟଙ୍କା ଖର୍ଚ୍ଚକରି କୋଠା କରିଥିଲା । ପାପ ଧନ, ମହାଶୟ । ପାଣି ତୋଡ଼ରେ ତା କୋଠା ଭାଙ୍ଗିଲା । ଆମର ଖୋରଧା ବେଙ୍ଗଡ଼ିଆଁରେ ତେପନ ଏକର ଜମି । ରଇତମାନେ ଆମ କଥାରୁ ଏଯାଏଁ ବାହାର ନୁହନ୍ତି । ଆମେ ଯେଉଁଦିନ ଲୁଙ୍ଗି ପିନ୍ଧିବୁ, ଗିଲାସରେ ଚା' ପିଇବୁ, ଶିମିଳିପୁର ଗାଁଆରେ ଲୋକେ କହିବେ, ମହାଜନ ଘରୁ ଧର୍ମ ବୁଡ଼ିଗଲା । ଏତେ ବଡ଼ ବଢ଼ିରେ ନଦୀ ଭିତରକୁ ଖାଇଲା ନାହିଁ । ତେଣୁ ଆମ ଘର ରହିଗଲା । ଧର୍ମର ବଳ, ମହାଶୟ । ଏ ବନ୍ୟା ଠାକୁରଙ୍କ ଇଚ୍ଛା । ନିଜେ ଭଗବାନ ତ ପୁଣି ଧର୍ମ ରକ୍ଷିବା ପାଇଁ ଜଳାର୍ଣ୍ଣବ ହୋଇଥିଲେ ।' X X X

ଏଇ ବଢ଼ି ଫଳରେ ବାଙ୍କୀର ଭୂଗୋଳରେ ଘରଟି ଏକ ଅଭୂତପୂର୍ବ ପରିବର୍ତ୍ତନ-ଚର୍ଚ୍ଚିକା ଠାକୁରାଣୀଙ୍କ ପାଦସ୍ପର୍ଶକରି ସୃଷ୍ଟି ହୋଇଛି ନୂତନ ନଦୀଟିଏ- ରେଣୁକା । ଅବଶ୍ୟ ଅତୀତରେ ରେଣୁକା ନଦୀର ଅସ୍ତିତ୍ୱ ସମ୍ପର୍କରେ ପ୍ରମାଣମାନ ଥିଲା । ମାତ୍ର ଲୁପ୍ତ ନଦୀଟି ହଠାତ୍ ବହୁ ଗୃହ ଓ ଶସ୍ୟକ୍ଷେତ୍ର ଗର୍ଭସ୍ଥ କରି ଆବିର୍ଭୂତ

ହେବ, ଏହା କିଏ କଳ୍ପନା କରିଥିଲା ? ଏଇ ନଦୀର ସୃଷ୍ଟି ଫଳରେ କଲେଜ ଛାତ୍ରମାନଙ୍କର ଗୋଟିଏ ଦୁଇମହଲା ମେସ୍ ନିଶ୍ଚିହ୍ନ ହୋଇଯାଇଛି । ମେସଟି ନିର୍ମାଣ କରିଥିଲେ ଜଣେ ବାବାଜୀ । ବାଙ୍କୀର ଏକାଧିକ ଲୋକଙ୍କ ମତରେ, ରେଣୁକା ନଦୀରେ ବାବାଜୀଙ୍କ ମେସ୍‌ଟି ଭାସିଯିବା ହିଁ ଯଥାର୍ଥ । ଚର୍ଚ୍ଚିକା ଠାକୁରାଣୀଙ୍କ ଧନ ଅପହରଣ କରି ବାବାଜୀ ଗଢ଼ିଥିଲେ ଦି' ମହଲା କୋଠା । ତାର ଆଉ କି ପରିଣତି ହୋଇଥାନ୍ତା ?

ଦୋଳନା ଗ୍ରାମରେ ଜଣେ ମୁଢ଼ି ବିକାଳୀ ବଢ଼ି ପରେ ସର୍ବସ୍ୱାନ୍ତ ହୋଇ ତା ପୁଅଟିକୁ ବାଣୀବିହାରର ଜଣେ ଅଧ୍ୟାପକଙ୍କ ଘରେ କାମରେ ରଖାଇଦେଇଛି । ରେଣୁକା ନଦୀର ସୃଷ୍ଟି ସମ୍ପର୍କରେ ତାର ବିବରଣୀ ଏହିପରି: ନିଜେ ଜଗନ୍ନାଥେ ସପନେଇଲେ ତାଙ୍କ ବଡ଼ପଣ୍ଡାଙ୍କୁ, ମତେ ରେଣୁକାନଦୀ ପାଣିରେ ଗାଧୋଇ ଦିଅ । ବଡ଼ପଣ୍ଡା ବାଙ୍କୀ ଆସିଲେ; କିନ୍ତୁ କୋଉ ଗାଡରୁ ପାଣି ନେଇ ପୁରୀ ଫେରିଲେ । କ୍ରୋଧ କଲେ ଜଗନ୍ନାଥେ – ଆଚ୍ଛା, ବାଙ୍କୀଆଙ୍କ କଥା ବୁଝିନେବା । ଏମିତି ବଢ଼ି ହେଲା ଯେ ପୁଣି ବାହାରିଲା ରେଣୁକାନଈ । ରଣ ନଈରେ ପଡ଼ିଲା । ରେଣୁକା ପାଣିରେ ଗାଧୋଇଲେ ଯାଇ ଜଗନ୍ନାଥେ ସନ୍ତୁଷ୍ଟ ହେବେ । X X X

ଭୋଇ ସାହୀର ଲୋକେ କିନ୍ତୁ ବଢ଼ି କଥା ଗପିଲାବେଳେ ଧର୍ମ ବିଷୟ ଉଠାଇଲେ ନାହିଁ । ବାଙ୍କୀ ସହର ମଝିରେ ଭୋଇ ସାହୀ, ମୋଟରେ ତିରିଶ ଘର– ମାଟି କାନ୍ଥ, ନୁଆଁଣିଆ ଚାଳ । ବଢ଼ିରେ ବହୁ ଲୋକଙ୍କ କାନ୍ଥ ଭୁଷୁଡ଼ି ପଡ଼ିଛି । ଗୋପାଳ ଭୋଇ ତା ଘରକୁ ଡ଼ାକି କାନ୍ଥରେ ବଢ଼ିପାଣି ଦାଗ ଦେଖାଇଲା । ତା ଘର ଭିତରେ ଛ ଫୁଟ ପାଣି ପଶିଥିଲା । ଚାରିଦିନ ପରେ ଛାଡ଼ିଲା ।

ଭୋଇସାହୀର ଲୋକେ କେବଳ ରିଲିଫ ନେବା ଛଡ଼ା ଆଉ କେଉଁଥିରେ ଆଗ୍ରହୀ ନଥିଲେ । ସମସ୍ତଙ୍କ ମୁହଁରେ ସେଇ ଗୋଟିଏ କଥା- ଆମର ସବୁ ଭାସିଯାଇଛି । ଆମେ କିଛି ପାଇ ନାହୁଁ । ଆମ ନାଁ ନେଖି ନିଅ । ସେମାନଙ୍କ ଘରର କାନ୍ଥସବୁ ଭାଙ୍ଗି ଯାଇଚି ନିଶ୍ଚୟ । କିନ୍ତୁ ସେମାନଙ୍କ ସମ୍ପତ୍ତି କହିଲେ କେତେ ଖଣ୍ଡ ଲୁଗା, ଗାମୁଛା, ଟିଣ ବାସନ । କ'ଣ ସବୁ ଭାସିଗଲା, ବୁଝିବା କଠିନ ।

ଭୋଇସାହୀରେ ଆମେ ଦେଖିଲୁ, ଟୋକାମାନେ ରଙ୍ଗୀନ ନାଲି ନେଳି ଲୁଙ୍ଗି ପିନ୍ଧି କାନ୍ଧରେ ତଉଲିଆ ପକାଇ ଜୁଡୁବୁଡୁ ତେଲରେ ମୁଣ୍ଡ କୁଣ୍ଡାଇ ଏପଟ ସେପଟ

ହେଉଛନ୍ତି । ରଘୁ ଭୋଇ ଦାରୁ ପିଇ ବସିଥିଲା । କେହି ଜଣେ କହିଲା, ସେ ଦାରୁ ପିଇଥିବାରୁ ତାକୁ ରିଲିଫ ମିଳିବ ନାହିଁ । ରଘୁ ଟଳି ଟଳି ଠିଆ ହୋଇପଡ଼ି ଦୁଇ ହାତରେ ନିଜ କାନମୋଡ଼ି କହିଲା, ଆଉ ଦାରୁ ପିଇବି ନାହିଁ । କାନ ମୋଡ଼ିହେଉଚି ।

ପଚାରି ବୁଝିଲୁ, ଭୋଇ ସାହୀରେ ଅନେକ ରିଲିଫ ପହଞ୍ଚି ସାରିଚି । ସରକାର ସାତଦିନ ଚାଉଳ ଯୋଗାଇ ଥିଲେ । ବେସରକାରୀ ସ୍ଥାନୀୟ ରିଲିଫ ଅନେକ ଆସୁଛି । ଜଣେ ଅଧ୍ୟାପକ କହିଲେ, 'ଏ ଲୋକେ କୋଢ଼ି ହୋଇ ଗଲେଣି । ଜଣକେ କୋଡ଼ିଏ ଖଣ୍ଡ ଲେଖାଏଁ ଲୁଗା ପାଇଲେଣି । ଲୁଗା ବିକି ମଦ ପିଉଛନ୍ତି ।'

ରିଲିଫ ଲୁଗା ଯଦି ମଦ୍ୟରେ ପରିଣତ ହୁଏ, ତେବେ ଲୋକେ 'ଧର୍ମହରା' ହୋଇ ଗଲେଣି ବୋଲି ବିଶ୍ୱନାଥ ସାହୁଙ୍କ ଅଭିଯୋଗ ଯଥାର୍ଥ । ❐

(୧୯୭୯)

# ଇଣ୍ଟରନେଟ୍ ନା ପାନୀୟଜଳ

ଭୁବନେଶ୍ୱରରୁ ଦୂରତା ମାତ୍ର ତିରିଶି କିଲୋମିଟର । ଉତ୍ତରା ଛକଠାରୁ ବାଙ୍କି ଗଲେ ବାଲିପାଟଣା ସହର, କୁଶଭଦ୍ରା ନଦୀ ଓ ତା'ପରେ ବନମାଳୀପୁର । ସହର ନୁହେଁ, ଗୋଟାଏ ବଡ଼ ଗାଁ ବୋଲି କୁହାଯିବ ।

ବନମାଳୀପୁର ହାଇସ୍କୁଲର ସୁବର୍ଣ୍ଣ ଜୟନ୍ତୀ ଉତ୍ସବରେ ଯୋଗଦେବାର ସୁଯୋଗ ମିଳିଥିଲା । ସାଙ୍ଗରେ ମୋର ବାଲ୍ୟବନ୍ଧୁ ବିଶପ୍ ଧୀରେନ୍ଦ୍ର କୁମାର ମହାନ୍ତି, ସମ୍ମାନିତ ଅତିଥି ଉପମୁଖ୍ୟମନ୍ତ୍ରୀ ବସନ୍ତ କୁମାର ବିଶ୍ୱାଳ, ସ୍ଥାନୀୟ ବିଧାୟକ, ଖୋର୍ଦ୍ଧାର ଜିଲ୍ଲାପାଳ । ବିଶପ୍ ମହାନ୍ତି ଓ ମୁଁ ପହଞ୍ଚିଲା ବେଳକୁ ସ୍ଥାନଟି ଜନାକୀର୍ଣ୍ଣ; ଆତସବାଜିରେ କମ୍ପୁଥାଏ ସ୍କୁଲ୍ ଓ ଗାଁ । ସମୟ ସନ୍ଧ୍ୟା ପାଞ୍ଚଟା । ଅସହ୍ୟ ଗରମ ଓ ଗୁଳୁଗୁଳି, ପୁଣି ଆତସବାଜିର ଉତ୍ତେଜନା ।

ଏପରି ଅବସରରେ ସଚରାଚର ଯାହା ଆଶା କରାଯାଏ, ତାହା ହିଁ ହେଲା । ଅତିଥିମାନଙ୍କ ପାଇଁ ଜଳଯୋଗ, ତା'ପରେ ସଭାସ୍ଥଳକୁ ଯାତ୍ରା । ସ୍କୁଲ୍ ପରିସରରେ ସଭା ଆରମ୍ଭ । ଫୁଲତୋଡ଼ା ପ୍ରଦାନ, ସ୍ୱାଗତ ସଙ୍ଗୀତ, ଅତିଥି ପରିଚୟ, ବିଭିନ୍ନ ବକ୍ତାଙ୍କ ଭାଷଣ ।

୧୯୪୭ରେ ଆରମ୍ଭ ହୋଇଥିଲା ବନମାଳୀପୁର ହାଇସ୍କୁଲ୍ । ଭାରତର ସ୍ୱାଧୀନତାର ପୁଣି ବନମାଳୀପୁର ହାଇସ୍କୁଲ୍‌ର ସୁବର୍ଣ୍ଣ ଜୟନ୍ତୀ ଏକାବର୍ଷ ପାଳିତ ହେବା ଏକ ବିଶେଷ ଘଟଣା ବନମାଳୀପୁର ହାଇସ୍କୁଲର ଛାତ୍ରଛାତ୍ରୀ, ଶିକ୍ଷକଶିକ୍ଷୟିତ୍ରୀ, ସ୍ଥାନୀୟ ଜନଗଣଙ୍କ ପାଇଁ । ଏହା ବାରମ୍ବାର ଉଲ୍ଲେଖ କରୁଥିଲେ ସେଦିନ ସନ୍ଧ୍ୟାର ଅତିଥିମାନେ ।

ସଂକ୍ଷିପ୍ତ ରିପୋର୍ଟରେ ପଢ଼ିଲେ ପ୍ରଧାନଶିକ୍ଷକ, ଗତ ପଚାଶ ବର୍ଷ ଭିତରେ ସ୍କୁଲ୍‌ର ବହୁ ଛାତ୍ର ଶିକ୍ଷା, ରାଜନୀତି, ଚିକିତ୍ସା ବିଦ୍ୟା, ଶାସନ କ୍ଷେତ୍ରରେ ସୁନାମ ଅର୍ଜନ କରିଛନ୍ତି ରାଜ୍ୟରେ ଏବଂ ଦେଶରେ । ଏପରିକି ଲୋକସଭାର ଜଣେ ପୂର୍ବତନ ବାଚସ୍ପତି, ଓଡ଼ିଶା ସରକାରଙ୍କ ଜଳସମ୍ପଦ ବିଭାଗର ଜଣେ ସେକ୍ରେଟାରୀ ଏହି ଅଞ୍ଚଳର । ସ୍କୁଲ୍‌ର ଅଭାବ ଅସୁବିଧା ପ୍ରତି ସେ ଦୃଷ୍ଟି ଆକର୍ଷଣ କଲେ ଉପମୁଖ୍ୟମନ୍ତ୍ରୀଙ୍କର । ନିବେଦନ କଲେ ସ୍କୁଲ୍ ପରିସରରେ ପ୍ରଥମେ ଦୁଇଟି ନଳକୂପ

ବସାଇବାକୁ । ଛାତ୍ରଛାତ୍ରୀମାନଙ୍କ ପାଇଁ ଯଥେଷ୍ଟ ପାନୀୟ ଜଳର ଅଭାବ । ସ୍ଥାନୀୟ ବିଧାୟକ ମଧ ଦୋହରାଇଲେ ସେହି କଥା ।

କହିଲେ ମାନ୍ୟବର ଉପମୁଖ୍ୟମନ୍ତ୍ରୀ, ସରକାରଙ୍କ ସୀମିତ ସମ୍ବଳ ମଧ୍ୟରେ ଯାହା ସମ୍ଭବ, ସେ କରିବେ ।

ଢ଼େର୍ ଢ଼େର୍ ଦାମିକା କଥା କୁହାଗଲା ସଭାରେ । ବନମାଳୀପୁର ହାଇସ୍କୁଲ୍‌ର ଐତିହ୍ୟ ଓ ପରମ୍ପରା, ଭାରତ ସରକାରଙ୍କ ଶିକ୍ଷାନୀତି, ଆଦର୍ଶ ଶିକ୍ଷାଦାନ ପଦ୍ଧତି, ଆଜିର ଛାତ୍ରଛାତ୍ରୀମାନଙ୍କ ପାଇଁ କମ୍ପ୍ୟୁଟର ଓ ଇଣ୍ଟର୍‌ନେଟ୍‌ର ଆବଶ୍ୟକତା ଇତ୍ୟାଦି ଆଲୋଚନା ପରିସରକୁ ଆସିଲା । ଭଲରେ କଟିଲା ସନ୍ଧ୍ୟାଟି । ବିଶପ୍ ମହାନ୍ତିଙ୍କ ସହିତ ଟାଟା ସୁମୋରେ ଭୁବନେଶ୍ୱର ବାହୁଡ଼ା ।

ବନମାଳୀପୁର ହାଇସ୍କୁଲର ଐତିହ୍ୟ ସହିତ ନଳକୂପର ଅଭାବ ମୋତେ କିପରି ଅସ୍ୱସ୍ତିକର କରୁଥାଏ ରାସ୍ତାସାରା । ବନମାଳୀପୁରର ଏତେ ପୁରାତନ ଛାତ୍ର ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠିତ ଯେତେବେଳେ, ନିଜ ସ୍କୁଲ ପାଇଁ ସାମାନ୍ୟ ପାନୀୟ ଜଳର ବ୍ୟବସ୍ଥା କରିପାରିନାହାନ୍ତି କାହିଁକି ବିଗତ ପଚାଶ ବର୍ଷ ମଧ୍ୟରେ ? ଓଡ଼ିଶା ସରକାରଙ୍କ ଅଫିସରଗଣ କି ଯୋଜନା କରିଛନ୍ତି ବନମାଳୀପୁର ପାଇଁ- ଯେଉଁଥିରେ ହାଇସ୍କୁଲଟି ପାଇଁ ପାନୀୟ ଜଳର ବ୍ୟବସ୍ଥା ନାହିଁ ? ସ୍ଥାନୀୟ ସଚେତନ ଜନସାଧାରଣ ସେମାନଙ୍କ ସ୍କୁଲର ମୌଳିକ ଆବଶ୍ୟକତା ପୂରଣ କରିବାରେ ବ୍ୟର୍ଥ ହୋଇଛନ୍ତି କାହିଁକି ? ରାଜନୀତି ତଥା ଅର୍ଥନୀତିର କ୍ଷମତା କେନ୍ଦ୍ର ଭୁବନେଶ୍ୱରର ମାତ୍ର ତିରିଶ କିଲୋମିଟର ଦୂରରେ ଥାଇ ଏମାନେ କ'ଣ ଏତେ ଅପାରଗ ? ଆମର ସ୍କୁଲ୍ ଓ କଲେଜମାନଙ୍କରେ କମ୍ପ୍ୟୁଟର ଓ ଇଣ୍ଟର୍‌ନେଟ ପ୍ରଚଳନ କରିବା ଆଜି ଜରୁରୀ ହୋଇ ପଡ଼ିଲାଣି- ଅଥଚ ଆମ ପାଇଁ ଯଥେଷ୍ଟ ପାନୀୟ ଜଳର ବ୍ୟବସ୍ଥା ଆମେ କରିପାରିନାହୁଁ ଏ ଯାଏଁ । ଅର୍ଥ, ଇଚ୍ଛା, ପରିକଳ୍ପନା-ଅଭାବ କେଉଁଠାରେ ? ପାନୀୟ ଜଳ ଓ ଇଣ୍ଟର୍‌ନେଟ୍ କାହାର ଆବଶ୍ୟକତା ପ୍ରଥମେ ବନମାଳୀପୁର ହାଇସ୍କୁଲ ପାଇଁ ଏବଂ ସମଗ୍ର ଭାରତ ପାଇଁ ଆଜିର ସୁବର୍ଣ୍ଣ ଜୟନ୍ତୀ ଉତ୍ସବରେ ? ❐

(୧୯୯୨)

# ଭାସ୍କର ମିଶ୍ରର କାହାଣୀ

ପୁରୀ ସହରର ଜଗନ୍ନାଥ ବଲ୍ଲଭ ମଠ ବଗିଚା ଭିତରେ ଲୋକଟି ସିମେଣ୍ଟ ଚଉତରା ଉପରେ ବସି ଏକ ଲୟରେ କିଛି ଗୋଟିଏ ଜିନିଷ ବାନ୍ଧିବାରେ ବ୍ୟସ୍ତ ଥିଲା । ତାକୁ ମୁଁ ଚିହ୍ନିଲି । ତା ପାଖରେ ଠିଆ ହେଲି, 'ଚିହ୍ନି ପାରୁଚ ?' ପଚାରିଲି ।

'ଚିହ୍ନିବି ନାହିଁ କାହିଁକି ?' ଲୋକଟି ହସିଲା । 'ଏଠି କ'ଣ କରୁଛ ?'

'କରିବି କ'ଣ ? ରାତିରେ ଶୋଇଥିଲି, ତମ୍ବୁ ବାନ୍ଧୁଚି ।'

ବନ୍ଧା ହୋଇଥିବା ହଳଦିଆ କନା ମେଞ୍ଚାଏ ସେ ଉପରକୁ ଟେକି ଦେଖାଇଲା । 'ଯେଉଁଠି ଯେତେବେଳେ ଇଚ୍ଛା ହେଲା, ତମ୍ବୁ ପକାଇ ଦେଇ ଶୁଏ । ଏକୁଟିଆ ମଣିଷ ।'

'କାଇଁ, ତୁମ ଘର ?' ପଚାରିଲି । 'ହ-ଘର ବଣିଆ ସାହୀରେ, କିନ୍ତୁ ଘରେ ମତେ ନିଦ ହୁଏନି ।' 'ଏବେ କ'ଣ କରୁଛ ?' 'ନାଇଁ, ଆର୍ତ୍ତ ମହାନ୍ତି ଚାକିରୀ ଖଣ୍ଡ ଖାଇଲା ପରେ ଆଉ କିଛି ନାଇଁ । ଦଶବର୍ଷ ହୋଇଗଲା । ପୋଷ୍ଟ ଅଫିସରେ କାମ କରୁଥିଲି । ଛଅ ହଜାର ଟଙ୍କା ଚୋରି ହୋଇଗଲାରୁ ମତେ ସେଥିରେ ପକେଇ ଦେଲେ ଆର୍ତ୍ତ ମହାନ୍ତି । ଆଠ ଦଶ ପୃଷ୍ଠା ରିପୋର୍ଟ ଲେଖି ମୋ ଚାକିରୀ ଖାଇବା କ'ଣ ଦରକାର ଥିଲା ? ତେବେ ଦୁଃଖ କଣ ? ଅଭାବ ନାହିଁ । ଅଧା ଜୀବନ କଟିଗଲାଣି । ଆଉ କେତେଟା ଦିନ କଟିଗଲେ ଗଲା'-ମୁହଁରେ ତାର ମଳିନ କରୁଣ ହସ ।

ପ୍ରାୟ ପନ୍ଦର ବର୍ଷ ପରେ ଆକସ୍ମିକ ଭାବରେ ତା ସଙ୍ଗେ ଏହିପରି ଦେଖା । ଅତି ପରିଚିତ ମୁହଁ, ସ୍କୁଲରେ ମୋ ସଙ୍ଗେ ପାଠ ପଢୁଥିଲା । ଗୋରା ପତଳା ଚେହେରା-କେବେ ପିଲାବେଳେ ବାମ ହାତଟି ଅପରେସନ ହୋଇଥିଲା, ସେଇଦିନୁ ବାମହାତଟି ଡ଼ାହାଣ ହାତର ଅଧା । ମାଟିଆ ପ୍ୟାଣ୍ଟ ଓ ଧଳା ହାଫ୍ ସାର୍ଟ ପିନ୍ଧି ସେ ସ୍କୁଲକୁ ଆସୁଥିଲା; ବସୁଥିଲା ପଛ ବେଞ୍ଚରେ । ପିଲାଦିନୁ ତାର କଥାବାର୍ତ୍ତା ଥିଲା ପ୍ରାଞ୍ଜଳ, ପରିଣତସୁଲଭ । ସେଥିପାଇଁ ହୁଏତ ସ୍କୁଲରେ ପଢ଼ିଲାବେଳେ ତା ସଙ୍ଗେ ବହୁ ସମୟ କଥା କହିବାକୁ ମୁଁ ଭଲ ପାଉଥିଲି । ଆଜି ଏତେବର୍ଷ ପରେ ମଧ୍ୟ ତା କଥାବାର୍ତ୍ତାର ଭଙ୍ଗୀରେ ପରିବର୍ତ୍ତନ ହୋଇ ନଥିଲା ।

'କିଛି କାମ କରୁନାହିଁ । ଚଳୁଛ କେମିତି ?'

'ଏକୁଟିଆ ମଣିଷ, ଅଭାବ ନାହିଁ, ସେ ଦୋହରେଇଲା । ତା ଉଜ୍ଜ୍ୱଳ ଚେହେରାରେ ଅଭାବ ଓ ଦାରିଦ୍ର୍ୟର ଛାପ ହିଁ ନଥିଲା ।

'ବାପା ?'

ଆକାଶକୁ ଚାହିଁଲା ସେ । କହିଲା, 'କେବେଠୁ ଚାଲି ଗଲେଣି ।' ଧୋତି ଓ ମାଟିଆ ଜାମା ପିନ୍ଧା ଲୋକଟିଏ ସାଇକେଲ ଗଡ଼ାଇ ପୁରୀ ସହରର ଗଳି ଓ ରାସ୍ତାମାନଙ୍କରେ ଘୂରି ବୁଲିବାର ଏକାନ୍ତ ପରିଚିତ ଦୃଶ୍ୟଟିଏ ମୋ ଆଖି ଆଗରେ ଭାସି ଉଠୁଥିଲା । ଲୋକଟି ଥିଲା ସି.ଆଇ.ଡ଼ି । ଆମେ ଯେଉଁମାନେ ବିଭିନ୍ନ ଛାତ୍ରଆନ୍ଦୋଳନରେ ସକ୍ରୀୟ ଭୂମିକା ନେଉଥିଲୁ ଏବଂ କେବେ କେବେ ସରକାରଙ୍କ ବିରୁଦ୍ଧରେ ଉତ୍ତେଜନାମୟ ଭାଷଣମାନ ଅଜାଡ଼ି ଦେଉଥିଲୁ ଆମ ମନରେ ସେଇ ଲୋକଟି ପାଇଁ ସାମାନ୍ୟ ଭୟ ଯେ ନଥିଲା, ତା' ନୁହେଁ । ମୁଁ ପୁଣି ଥରେ କହିଲି, 'କିଛିଗୋଟିଏ କାମକଲେ ତୁମକୁ ଭଲଲାଗନ୍ତା ।'

ସେ ମୋ କଥାରେ ସମ୍ମତି ଜଣାଇଲା । 'କିନ୍ତୁ ଅଭାବତ ନାହିଁ । କିଛି ନ ମିଳିଲେ ବି' ଚାରିଟା ପତ୍ର ଚୋବାଇ ଦେଲେ ଚଳିଯାଉଛି ।'

'ପତ୍ର ଜଣ ଖାଇ ହୁଏ ?' ମୁଁ ଆଶ୍ଚର୍ଯ୍ୟ ହେଲି ।

ସେ ଓ ମୁଁ ଏକସଙ୍ଗେ ଚାଲିବାକୁ ଆରମ୍ଭ କରିଥିଲୁ । ଆମ ରାସ୍ତାର ଦୁଇପାଖରେ ବଢ଼ିଥିବା ବର୍ଷାଦିନିଆ ବଗିଚା ଆଡ଼େ ହାତ ବଢ଼ାଇ ସେ କହିଲା 'ଜନ୍ତୁମାନଙ୍କ ପାଇଁ ଯେମିତି ପତ୍ରମାନଙ୍କରେ ଆହାର ଅଛି, ସେମିତି ଅଛି ମଣିଷ ପାଇଁ । ମୋର ପତ୍ରମାନଙ୍କ ସାଙ୍ଗେ ନିଶ୍ଚିନ୍ତି ହୋଇ ଯାଇଛି । ପତ୍ରମାନଙ୍କ କ୍ଷୀର ଖାଇଲେ ପାକସ୍ଥଳୀ କ୍ରିୟା ଠିକ୍ ରହେ । ପତ୍ର ଖାଇ ନ ଥିଲେ ମତେ ରୋଗ ହୋଇ ସାରନ୍ତାଣି ।'

ସେ ଖୁବ୍ ସହଜ ସ୍ୱାଭାବିକ ଭାବରେ କହୁଥିଲା ଏକଥା ।

ଆମେ କିଛି ବାଟ ଚାଲିବା ପରେ ଜଗନ୍ନାଥବଲ୍ଲଭ ମଠ ପୋଖରୀ ନିକଟରେ ପହଞ୍ଚିଲୁ । ଗାମୁଛା ଓ ଲୁଗାପିନ୍ଧା ବହୁଲୋକ ତେଲ ବୋଳି ହୋଇ ଗାଧୋଇବା ପାଇଁ ପୋଖରୀ ଆଡ଼େ ମୁହାଁଇଥିଲେ । ସେ ବି ସେଇ ଆଡ଼େ ମୁହାଁଇଲା ।

'କିଛି ମନେ କରିବ ନାହିଁ,' ମୁଁ କହିଲି 'ତୁମ ନାଁଆଟା ଭୁଲି ଯାଇଚି ।'

ମୋତେ ପଛକରି ଚାଲି ଯାଉ ଯାଉ ସେ କହିଲା, 'ଭାସ୍କର ମିଶ୍ର' । ❑

(୧୯୮୩)

# ସନ୍ ହୋଟେଲ୍

# ଅଜୁର ସଂସାର

ଅଜୁ ସନ୍ ହୋଟେଲ୍‌ରେ ସକାଳୁ ରାତି ଦଶଟା ଯାଏଁ ଟେବୁଲ୍ ପୋଛେ ଓ ଅଇଁଠା ବାସନ, ଡେକ୍‌ଚି, କରେଇ ମାଜେ । ପତଳା, ସାବନା, ହସ ହସ, ତରତରିଆ ଅଜୁ ।

ପୁରୀ ସମୁଦ୍ର କୂଳେ ଚାଳ ଘରଟିଏ– ସାମ୍‌ନାରେ କାଠର ଚେୟାର୍, ଟେବୁଲ୍, ବେଞ୍ଚ୍ କେତୋଟି । ପ୍ରତି ଟେବୁଲ୍ ଉପରେ ତାଳପତ୍ର ବରଡାର ଛାତ । ଏହା ହିଁ ସନ୍ ହୋଟେଲ୍ । ଏଠାରେ ଚା, କଫି, ଲଞ୍ଚ୍ ଓ ଡ଼ିନର୍ ସହିତ ସମୁଦ୍ରର ବିସ୍ତୃତି ଲକ୍ଷ୍ୟ କରିହୁଏ, ଶୁଣିହୁଏ ସମୁଦ୍ର ସଂଗୀତ । ଉପରେ ଆକାଶ, ତଳେ ବାଲି । ଦେଶୀ ବିଦେଶୀ ମଣିଷମାନଙ୍କର ଆଡ଼୍‌ଡ଼ା ଏଠି । ଖାଇବାଟା ଖୁବ୍ ଭଲ, ଅଥଚ ବଡ଼ ବଡ଼ ହୋଟେଲ୍‌ଠାରୁ ଶସ୍ତା ।

ଏଇଠି କାମ କରିବାରେ କେତେ ଦିନ ହେଲା ଅଭ୍ୟସ୍ତ ଅଜୁ । ଆମେ ଲଞ୍ଚ୍ ଖାଉଥିବା ସମୟରେ ଆମର ଖୁବ୍ ନିକଟରେ ଠିଆ ହୋଇଥିଲା ସେ । ଆମର ସଂକ୍ଷିପ୍ତ କଥାବାର୍ତ୍ତା :

ତୋର ବୟସ ?

ଚଉଦ ।

ତତେ ଏ କାମ କରିବାକୁ ଭଲ ଲାଗୁଛି ?

ହଁ । (ହସ)

ମାସକୁ କେତେ ଦରମା ପାଉ ?

ଅଢ଼େଇଶ ଟଙ୍କା ।

ଘରକୁ କେତେ ଦେଉ ?

ସବୁ ।

ତୋ ଖର୍ଚ୍ଚ ପାଇଁ କିଛି ରଖୁ ନାହିଁ ?

ନା । ଯୋଉ ଉପୁରି ପାଏ, ଖର୍ଚ୍ଚ କରେ ।

ଘରେ କିଏ କିଏ ଅଛନ୍ତି ?

ବାପା, ମା, ଭାଇ, ଭଉଣୀ ।

ବାପା କ'ଣ କରନ୍ତି ?

ରିକ୍ସା ଟାଣନ୍ତି ।

ଭାଇ ଭଉଣୀ କ'ଣ କରନ୍ତି ?

ଘରେ ରହନ୍ତି ।

ତୁ ଜାଣିଚୁ- ଚଉଦ ବର୍ଷରେ ତୋ ପରି ପିଲା ଏମିତି କାମ କରିବା ବେଆଇନ୍ ?

(ଅଙ୍କୁର ହସ ।)

ଅଙ୍କୁ ସହିତ ଆଉ କିଛି ସମୟ କଥାବାର୍ତ୍ତା କରିବାକୁ ଭାବୁଥିଲି ହୁଏତ । ମାତ୍ର ଏତିକିବେଳେ ଟେଲିଭିଜନ୍‌ରେ (ସନ୍ ହୋଟେଲ୍‌ରେ କଳା-ଧଳା ଟେଲିଭିଜନ୍‌ଟିଏ ମଧ୍ୟ ଅଛି) କିଛି ଗୋଟାଏ ଚମତ୍କାର ଦୃଶ୍ୟ ଆମକୁ ଅନ୍ୟମନସ୍କ କରିଦେଲା । ଅଙ୍କୁ ଆମ ଆଡ଼ୁ ମୁହଁ ବୁଲାଇ ନେଲା । ଆମେ ଖାଇବାରେ ବ୍ୟସ୍ତ ରହିଲୁ ।

କିଛି ସମୟ ପରେ କେହି ଜଣେ ଅଙ୍କୁକୁ ଚଢା ଗଳାରେ କହୁଥିବାର ଶୁଣାଗଲା, 'ଶଳା, ତତେ ହାଣି କରି ଏଇଠି ପୋତିଦେବି ବେ । କାମ ବେଳେ ବଗୁଲିଆ ହଉଚୁ ।'

ଆମେ ଅଙ୍କୁ ଆଡ଼କୁ ଅନାଇଲୁ । ସେ ଟେଲିଭିଜନ୍ ଦେଖିବା ଛାଡ଼ି ପାଖ ଟେବୁଲ୍ ଉପରୁ ଅଇଁଠା ବାସନ ଉଠାଉଛି ଓ ତାକୁ ଯେ ଗାଳି ଦେଉଛନ୍ତି, ତାକୁ ଚାହିଁ ହସୁଚି ।

**ଫରେନର୍ ଓ ସ୍ଥାନୀୟ ଲୋକେ**

'ଜଣେ ଫରେନର୍ ସ୍କୁଲଟିଏ ଖୋଲିଲେ ସେମାନଙ୍କର କ'ଣ ହେଲା ?' – ସନ୍ ହୋଟେଲ୍‌ରେ କେହି ଜଣେ ପଚାରିଲେ ଆଉ ଜଣକୁ ।

ଦୁଇ ଜଣ ଗୋରା ଯୁବକ ଓ ଦୁଇ ଜଣ ଗୋରା ଯୁବତୀ ପାଖ ଟେବୁଲ୍‌ରେ ବସି କୋକାକୋଲା ଓ ସିଗାରେଟ୍ ପିଉଥିଲେ । ସେମାନଙ୍କୁ ଦେଖି ହୁଏତ ପ୍ରଶ୍ନକର୍ତ୍ତା

ସେ ଜାଣିଥିବା ଗୋରା ଲୋକଟି ସମ୍ପର୍କରେ ପଚାରିଲେ ପ୍ରଶ୍ନଟି । ଉତ୍ତର ଦେଲେ ସେ ନିଜେ :

'ସେ ଗୋରା ଲୋକଟି ଆୟର୍ଲ୍ୟାଣ୍ଡ୍‌ରୁ ଆସି ଏଠି ସମୁଦ୍ର କୂଳେ ସ୍କୁଲ୍‌ଟିଏ ଖୋଲିଥିଲା । ପ୍ରାୟ ଶହେ ପିଲାଙ୍କୁ ପଢ଼ାଉଥିଲା । ସେମାନଙ୍କ ପାଇଁ ବହି କିଣି ଦେଉଥିଲା; ସେମାନଙ୍କୁ ନାନା ଖେଳ ବି ଶିଖାଉଥିଲା । ବେଳେ ବେଳେ ପିଲାମାନଙ୍କୁ ଏଠିକି ଆଣି କୋଲ୍ଡ୍ ଡ୍ରିଂକ୍ ପିଆଏ । ଯେଉଁମାନଙ୍କର ଖାଇବାକୁ ନଥାଏ, ସେମାନଙ୍କୁ ଖାଇବାକୁ ଦିଏ ।

ଆଉ ଲୋକଟିର ପ୍ରଶ୍ନ :

'କେଉଁ ପିଲାମାନେ ଇସ୍କୁଲରେ ପଢୁଥିଲେ ?'

ଉତ୍ତର: 'ଯିଏ ଆସିଲା, ପଢ଼ିଲା । ଗରିବ ପିଲାମାନଙ୍କୁ ସେ ବହୁତ ଭଲ ପାଉଥିଲା । ସବୁବେଳେ ତ ସେଇ ପିଲାମାନଙ୍କ କଥା ଇ ବୁଝୁଥିଲା ।'

ପ୍ରଶ୍ନ: 'ସ୍କୁଲ୍ ପାଇଁ ଟଙ୍କା ଆଣୁଥିଲା କେଉଁଠୁ ?'

ଉତ୍ତର: 'ଯେଉଁ ଫରେନର୍‌ମାନେ ଆସନ୍ତି, ସେଇମାନଙ୍କଠାରୁ ଟଙ୍କା ଆଦାୟ କରୁଥିଲା । କିନ୍ତୁ ସ୍ଥାନୀୟ ଲୋକେ ତାକୁ ନାନା ପ୍ରକାର ହଇରାଣ ହରକତ କଲେ । ବାଧ୍ୟ ହୋଇ ସେ ସ୍କୁଲ ବନ୍ଦ କରି ଚାଲିଗଲା ।'

ପ୍ରଶ୍ନ: 'ତାକୁ ହଇରାଣ କଲେ କାହିଁକି ?'

ଉତ୍ତର: 'କାହିଁକି ଆଉ କ'ଣ, ସମସ୍ତେ ତାକୁ ବଟି ମାଗିଲେ । ଭାବିଲେ, ସିଏ ତ ଏତେ ଟଙ୍କା ପାଉଛି, ସେମାନଙ୍କୁ କିଛି କିଛି ଦେଉ । ନଦେଲାରୁ ପୁଲିସ୍ ଲଗାଇ ତାକୁ ଏଠାରୁ ବାହାର କରିଦେଲେ । ସ୍କୁଲ୍ ଭାଙ୍ଗି ଲୋକଟି କୁଆଡ଼େ ଚାଲିଗଲା ।'

'ସେ ଲୋକର ଠିକଣା ମିଳିପାରିବ ?' – ମୁଁ ପଚାରିଲି । ଏ ଯାଏଁ ନୀରବରେ ମୁଁ ଶୁଣୁଥିଲି କେବଳ ।

ପ୍ରଶ୍ନକର୍ତ୍ତା ଓ ଉତ୍ତରଦାତା ସମସ୍ୱରରେ କହିଲେ, 'ହଁ, ମିଳିବ ନିଶ୍ଚୟ । ଖବର ନେବାକୁ ହେବ !' ❐

(୧୯୯୯)

# ବର୍ଷା ତୋଫାନରେ ଜଗନ୍ନାଥଙ୍କ ରଥ

୧୯୯୩ ମସିହା ଦୂରଦର୍ଶନରେ ଜଗନ୍ନାଥଙ୍କ ରଥଯାତ୍ରାର ବିବରଣୀ ପ୍ରଦାନ ପାଇଁ ମୋତେ ନିମନ୍ତ୍ରଣ କରାଯାଇଥିଲା । ସେହି ସୁଯୋଗରେ ଜଗନ୍ନାଥ ମନ୍ଦିର ସନ୍ନିକଟ ରଘୁନନ୍ଦନ ପାଠାଗାରର ଛାତ ଉପରୁ ରଥଯାତ୍ରା ପ୍ରତ୍ୟକ୍ଷ କରିବାର ସୁଯୋଗ ପାଇଥିଲି ।

ସେଦିନ ଜୁନ୍ ୨୧ ତାରିଖ । ସକାଳୁ ଆକାଶ ମେଘାଚ୍ଛନ୍ନ ଥାଏ । ଏପରିକି ସକାଳେ ସମୁଦ୍ର କୂଳର କୌଣସି ଚା ଦୋକାନରେ ଜଣେ ରିକ୍ସାବାଲା କହୁଥିବାର ଶୁଣିଥିଲି, 'ମହାପ୍ରଭୁ, ଆଜି ଭଲକରି ବର୍ଷା କରନ୍ତୁ । ପାପୀ ମଣିଷମାନେ ଆପଣଙ୍କ ଦର୍ଶନ ନ ପାଆନ୍ତୁ ।'

ସବୁ କିନ୍ତୁ ସୁରୁଖୁରୁରେ ଆରମ୍ଭ ହେଲା– ପହଣ୍ଡି, ରଥଟଣା । ବଡ଼ଦାଣ୍ଡ ଯଥାରୀତି ଲୋକାରଣ୍ୟ । କେବେ କେମିତି ମେଘମାନଙ୍କ ସନ୍ଧିରେ ସାମାନ୍ୟ ସୂର୍ଯ୍ୟକିରଣ ଝରିପଡୁଥାଏ ।

ଅପରାହ୍ନରେ କିନ୍ତୁ ଚତୁର୍ଦ୍ଦିଗ ଅନ୍ଧକାର ହୋଇ ଆସିଲା । ଜଗନ୍ନାଥଙ୍କ ରଥ ଏଇ ମାତ୍ର ଯାତ୍ରା ଆରମ୍ଭ କରିଥାଏ– ପହଞ୍ଚିଥାଏ ରାଜନଅର ସମ୍ମୁଖରେ । ମାଡ଼ିଆସିଲା ପ୍ରଚଣ୍ଡ ବର୍ଷା ତୋଫାନ ।

ରଥଯାତ୍ରାର ବିବରଣୀ ପ୍ରଦାନ କରୁଥିବା ଆମେ କେତେଜଣ ରଘୁନନ୍ଦନ ପାଠାଗାର ଉପରୁ ଲକ୍ଷ୍ୟ କରୁଥାଉ ବର୍ଷା ଓ ତୋଫାନର ବେଗ । ବିବରଣୀ ପ୍ରଦାନ ଆଉ ସମ୍ଭବ ହେଲାନାହିଁ । ଲକ୍ଷ୍ୟକଲି– ବର୍ଷା ହେବା ମାତ୍ରେ ପ୍ୟାଣ୍ଟ୍–ସାର୍ଟ୍ ପରିହିତ ସଭ୍ୟ ଶିକ୍ଷିତ ବ୍ୟକ୍ତିମାନେ ଯଥାଶୀଘ୍ର ବଡ଼ଦାଣ୍ଡରୁ ପଳାୟନ କରିବାରେ ଲାଗିଲେ– ରଥଟଣା ବା ଜଗନ୍ନାଥ ଦର୍ଶନ ପଛରେ ପକାଇ । ବର୍ଷା-ତୋଫାନର ଭୟ ଆଗରେ ଜଗନ୍ନାଥ ବା ରଥଯାତ୍ରାର ଆକର୍ଷଣ ସେମାନଙ୍କ ପାଇଁ କେତେ ?

ବର୍ଷା ବଢ଼ିବାରେ ଲାଗିଲା । ବଡ଼ଦାଣ୍ଡରେ ଦୁଇ-ତିନି ଫୁଟ୍ ଉଚ୍ଚ ପାଣିର ସୁଅ । ଜଗନ୍ନାଥଙ୍କ ରଥ ସ୍ଥିରହୋଇ ରହିଥାଏ ରାଜନଅର ସମ୍ମୁଖରେ । ଏବଂ କି ଆଶ୍ଚର୍ଯ୍ୟ ! ସେଇ ରଥକୁ ଘେରି ତଥାପି ଠିଆ ହୋଇ ରହିଥାଆନ୍ତି ଶହ ଶହ ଲୋକ । କିଏ ଏମାନେ ? ଏଇ ଲୋକମାନେ ନିର୍ବିକାର ଠିଆ ହୋଇଥାନ୍ତି ରଥକୁ ଘେରି– ବର୍ଷା– ତୋଫାନକୁ ସାମାନ୍ୟ ଖାତିର ନ କରି । ବର୍ଷାରେ ସେମାନେ ଜୁଡୁବୁଡୁ

ଅଣ୍ଡାରେ ଥରୁଥାନ୍ତି ହୁଏତ; କିନ୍ତୁ ସେମାନଙ୍କ ଦେବତା ଜଗନ୍ନାଥଙ୍କୁ ଛାଡ଼ି ସେମାନେ ଦୌଡ଼ି ପଳାଉନଥାନ୍ତି ନିରାପଦ ସ୍ଥାନକୁ ।

ଯେଉଁମାନେ ବର୍ଷା-ତୋଫାନ ଭୟରେ ସେଦିନ ଜଗନ୍ନାଥଙ୍କ ରଥ ଛାଡ଼ି ଦୌଡ଼ି ପଳାଇଲେ- ଓ ଯେଉଁମାନେ ଗଲେ ନାହିଁ, ସେମାନେ କ'ଣ ଗୋଟିଏ ଗୋଷ୍ଠିର ମଣିଷ ?

ରଘୁନନ୍ଦନ ପାଠାଗାର ଛାତ ଉପରୁ ଏଇ ଦୃଶ୍ୟ ଲକ୍ଷ୍ୟ କରୁ କରୁ ସେଦିନ ମୁଁ ବୁଝିଲି- ଦୁଇଟି ଗୋଷ୍ଠିର ମଣିଷ ଆସିଛନ୍ତି ଜଗନ୍ନାଥ ବା ରଥଯାତ୍ରା ଦର୍ଶନ ପାଇଁ । ଶିକ୍ଷିତ ଓ ଅଶିକ୍ଷିତ, ସହରୀ ଓ ଗାଉଁଲି ମଣିଷ । ଯେଉଁମାନେ ବର୍ଷା- ତୋଫାନକୁ ଡ଼ରି ଜଗନ୍ନାଥଙ୍କୁ ଛାଡ଼ି ପଳାୟନ କଲେ, ସେମାନେ ଥିଲେ ସହରୀ ଶିକ୍ଷିତ ମଣିଷ; ଯେଉଁମାନେ ବର୍ଷା- ତୋଫାନକୁ ଖାତର୍ ନ କରି ଠିଆହୋଇ ରହିଲେ, ସେମାନେ ଥିଲେ ଅଶିକ୍ଷିତ ଗାଉଁଲି ମଣିଷ ।

ଜଗନ୍ନାଥ ଓଡ଼ିଆ ସ୍ୱାଭିମାନର ପ୍ରତୀକ; ଓଡ଼ିଆତ୍ୱର ପରିଚୟ । ସେଇଦିନ ବର୍ଷା–ତୋଫାନରେ ମୁଁ ଓଡ଼ିଆ ସ୍ୱାଭିମାନ, ଓଡ଼ିଆତ୍ୱ ପ୍ରତ୍ୟକ୍ଷ କଲି । ସେଇ ସ୍ୱାଭିମାନ, ସେଇ ଓଡ଼ିଆତ୍ୱ ବଞ୍ଚାଇ ରଖିଛନ୍ତି ଆମର ଅଶିକ୍ଷିତ, ଗାଉଁଲି ଓଡ଼ିଆମାନେ । ଆମର ଶିକ୍ଷିତ- ସହରୀ ମଣିଷମାନେ ବର୍ଷା–ତୋଫାନ ହେଲେ ଜଗନ୍ନାଥଙ୍କୁ ଛାଡ଼ି ପଳାୟନ କରିପାରନ୍ତି; କିନ୍ତୁ ଅଶିକ୍ଷିତ ଗାଉଁଲି ମଣିଷମାନେ ସେପରି କରିବେ ନାହିଁ ।

ଯଦି ଓଡ଼ିଆ ଭାଷା, ସଂସ୍କୃତି, ଜାତୀୟତା ବଞ୍ଚି ରହିଛି ବା ବଞ୍ଚି ରହିବ, ତାହା କେବଳ ଆମର ଅଶିକ୍ଷିତ ଗାଉଁଲି ମଣିଷମାନଙ୍କ ପାଇଁ । ପ୍ରଚଣ୍ଡ ବର୍ଷା– ତୋଫାନରେ ଜଗନ୍ନାଥଙ୍କ ରଥକୁ ଘେରି ଠିଆ ହୋଇଥିବା ସେଇ ମଣିଷମାନଙ୍କ ଦୃଶ୍ୟ ବାରମ୍ବାର ମୋ ସାମ୍ନାରେ ଭାସି ଉଠୁଛି– ତାହା ହିଁ ଓଡ଼ିଆତ୍ୱ, ଓଡ଼ିଆ ସ୍ୱାଭିମାନର ଦୃଶ୍ୟ । ❐

(୨୦୦୧)

# ସେ ଦିନେ ମନ୍ତ୍ରୀ ଥିଲେ

ବାଣପୁର ଗୋଦାବରୀଶ ବିଦ୍ୟାପୀଠରେ ସଭାଟିଏ ସାରି ଫେରିବା ବେଳକୁ ଅପେକ୍ଷା କରିଥିଲେ ଜଣେ କେହି । 'ଆପଣଙ୍କ ଗାଡ଼ିରେ ଏଇ ବୁଢ଼ାଙ୍କୁ ଟିକିଏ ନେଇଯାନ୍ତୁ ବାଲୁଗାଁ ଯାଏଁ ।' ବୁଢ଼ା ହାତରେ ବାଡ଼ି ଖଣ୍ଡିଏ ଧରି ଠିଆ ହୋଇଥାନ୍ତି । ତାଙ୍କୁ ଭଲ କରି ଦିଶୁ ନଥାଏ କି ଶୁଭୁ ନଥାଏ । କଷ୍ଟେମଷ୍ଟେ ସେ ଗାଡ଼ିର ସାମ୍ନା ସିଟ୍‌ରେ ବସିଲେ । ଗାଡ଼ି ଚାଲିଲା ।

ଅଳ୍ପ ସମୟ ଆଗରୁ ସେଇ ସଭାରେ ବୁଢ଼ାଙ୍କୁ ସମ୍ବର୍ଦ୍ଧନା ଦିଆଯାଇଥିଲା । ମାନପତ୍ର ଓ ମାଳାଟିଏ ନେବା ଅବସରରେ ମନକୁ ମନ ସେ କହୁଥିଲେ, 'ଆଜି ଦେଶରେ ତ୍ୟାଗର କଥା ସମସ୍ତେ ଭୁଲିଗଲେଣି । ସ୍ୱାଧୀନତାର ପଚାଶ ବର୍ଷ ପରେ ପୁଣିଥରେ ଆନ୍ଦୋଳନ କରିବାର ସମୟ ଆସିଛି ।' ତାଙ୍କ କଥାରେ କେହି ଗୁରୁତ୍ୱ ଦେଲାଭଳି ମନେ ହେଉ ନଥିଲା । ତ୍ୟାଗ, ଆନ୍ଦୋଳନ ଇତ୍ୟାଦି ଶବ୍ଦସବୁ ଆଧୁନିକ ଭାରତୀୟ ଭାଷାମାନଙ୍କରେ ହାସ୍ୟ ଉଦ୍ରେକ କରନ୍ତି କେବଳ ।

ମୋ ପାଖରେ ବସିଥିବା ବନ୍ଧୁ ଫୁସ୍‌ଫୁସ୍ ହୋଇ କହିଲେ, 'ଆଜ୍ଞା, ଆପଣ ଜାଣନ୍ତି ନାହିଁ– ଏ ବୁଢ଼ା ଦିନେ ମନ୍ତ୍ରୀ ଥିଲେ ।'

ମନ୍ତ୍ରୀ ଥିଲେ ? ଯେଉଁମାନେ ଦିନେ ମନ୍ତ୍ରୀ ଥାନ୍ତି, ସେମାନେ କ'ଣ ଏମିତି ଦରିଦ୍ର ଅସହାୟ ହୋଇ ପଡ଼ନ୍ତି ? ମୁଁ ବୁଢ଼ାଙ୍କ ବିଷୟରେ ଆଗ୍ରହୀ ହେଲି ।

ବଡ଼ ପାଟିରେ ପଚାରିଲି, 'ଆପଣ କ'ଣ କରନ୍ତି ?'

ବୁଢ଼ା କହିଲେ, 'ଆଉ କରିବି କ'ଣ ? ଏତେବର୍ଷ ତ ଦେଶ ସେବା କଲି । ଏବେ ନିଜ ଗାଁଆରେ ରହୁଛି । ଗାଁଆର ଲୋକଙ୍କ ପାଇଁ କିଛି କିଛି କାମ କରୁଛି । ଗୋଟିଏ ବୋଲି ପୁଅ । ସେମିତି କିଛି କରେନାହିଁ । ଜମିବାଡ଼ିରୁ ଅଧେ ବିକ୍ରୀ ହୋଇଗଲାଣି ।

'ଦୁଃଖେକଷ୍ଟେ ଚଳୁଛୁ । ଓଡ଼ିଶା ସରକାରଙ୍କ ସ୍ୱାଧୀନତା ସଂଗ୍ରାମୀ ପେନ୍‌ସନ୍ ପାଞ୍ଚଶହ ଟଙ୍କା ଅବଶ୍ୟ ମିଳୁଛି । ମାତ୍ର ଭାରତ ସରକାର ଦେଉଥିବା ପେନ୍‌ସନ୍ ମିଳି ନାହିଁ । ପୂର୍ବତନ ଏମ୍.ଏଲ୍.ଏ ଭାବରେ ପେନ୍‌ସନ ମିଳିବା କଥା । ତା ମଧ୍ୟ ମିଳିନାହିଁ । ଜାନକୀକୁ ଦେଖାକରି କହିଛି ।'

'ଆପଣ କେବେ ମନ୍ତ୍ରୀ ଥିଲେ ?'

'ବିଶ୍ୱନାଥ ଦାସଙ୍କ ମନ୍ତ୍ରୀମଣ୍ଡଳରେ ମନ୍ତ୍ରୀ ଥିଲି । ମାତ୍ର ତିନି ଚାରିମାସ । ମହତାବ ଲାଗି ସେ ମନ୍ତ୍ରୀମଣ୍ଡଳ ଭାଙ୍ଗିଦେଲା । ମୁଁ ଥିଲି ପଞ୍ଚାୟତ ବିଭାଗର ଉପମନ୍ତ୍ରୀ । ତା'ପରେ ଆଉ ଥରେ ନନ୍ଦିନୀ ଶତପଥୀ ଡାକିଥିଲେ ମନ୍ତ୍ରୀ ହେବାକୁ । ବିନାୟକ ଆଚାର୍ଯ୍ୟ ମଧ୍ୟ ଡାକିଥିଲେ ଫରେଷ୍ଟ କର୍ପୋରେସନ୍‌ର ଚେୟାରମ୍ୟାନ୍ ଦେବାକୁ । ମନା କଲି । ଯେଉଁଥିରେ ଆଗ୍ରହ ନାହିଁ, ତାହା ଗ୍ରହଣ କରିବା ଉଚିତ ନୁହେଁ ।'

'ଆପଣ ସ୍ୱାଧୀନତା ଆନ୍ଦୋଳନରେ ଭାଗ ନେଇଥିଲେ । ପୁଣି ଥରେ ଆନ୍ଦୋଳନ କରିବେ ବୋଲି ଭାବୁଛନ୍ତି ?'

'ହଁ,' ସେ କହିଲେ, 'ପୁଣି ଆନ୍ଦୋଳନ କରିବି । ଦେଶର ଅବସ୍ଥା ଯାହା ହେଲାଣି, ଆଉ ଥରେ ଆନ୍ଦୋଳନ ନକଲେ ହେବ ନାହିଁ ।'

ମୋର ପ୍ରଶ୍ନ: 'ଆମେ ଆପଣଙ୍କୁ ବାଲୁଗାଁ'ରେ ଛାଡ଼ିଦେଲେ ଆପଣ ଗାଁଆକୁ ଯିବେ କେମିତି ? ଆପଣଙ୍କୁ ତ ଭଲ ଦିଶୁନାହିଁ ।'

ତାଙ୍କର ଉତ୍ତର: 'ଗାନ୍ଧୀ ଛକରେ ମୋତେ ଛାଡ଼ିଦେଲେ ରିକ୍ସାରେ ମୁଁ ଚାଲିଯିବି । ମୋର ଚିହ୍ନା ରିକ୍ସାବାଲା ଅଛନ୍ତି । ସେଠୁ ଗାଁ ଦୁଇତିନି କିଲୋମିଟର ବାଟ ।'

ଗାନ୍ଧୀଛକରେ ତାଙ୍କୁ ଓହ୍ଲାଇଦେଲୁ । ସେ ଗାଡ଼ିରୁ ଓହ୍ଲାଉ ଓହ୍ଲାଉ ତାଙ୍କର ପରିଚିତ କେହି ଜଣେ ଜୁଟିଗଲେ । ଗାଁଆକୁ ଫେରିବାରେ ତାଙ୍କର ଅସୁବିଧା ହୋଇ ନଥିବ ।

ବୁଢ଼ାଙ୍କ ନାଁ କହିବାକୁ ଭୁଲିଯାଇଛି- ରାମଚନ୍ଦ୍ର ପ୍ରହରାଜ । ❐

(୧୯୯୭)

# ପତ୍ରପୁର ଘାଟ ଓ ବ୍ରାହ୍ମଣୀ ସେତୁ

ପତ୍ରପୁର ଘାଟରେ ପହଞ୍ଚିଲା ବେଳକୁ ସଞ୍ଜ ଗଡ଼ିଯାଇଥିଲା । ବ୍ରାହ୍ମଣୀ ନଈ ପାରିହୋଇ ସେ କୂଳକୁ ଯିବାକୁ ହେବ । ସେ କୂଳ ଆକାଶରେ ପୂର୍ଣ୍ଣିମାର ନାରଙ୍ଗୀ ଜହ୍ନ । ଏ କୂଳରେ ନଈ ପାରିହେବାକୁ ବ୍ୟାକୁଳ ଗାଉଁଲି ଲୋକମାନେ– ସାଙ୍ଗରେ ବୁଢ଼ୁଳା, ତିନି ଚାରିଟା ସାଇକେଲ, ନାଉରିଆମାନଙ୍କ ପାଟିତୁଣ୍ଡ । ଘାଟ ମାହାସୁଲ ନେଇ ଯୁକ୍ତିତର୍କ । ଜହ୍ନଆଲୁଅ, ନଈକୂଳ ଓ ଗାଉଁଲି ମଣିଷମାନଙ୍କ କୋଳାହଳ ସୃଷ୍ଟି କରୁଛି ରହସ୍ୟମୟ ପରିବେଶ !

ଓ ଠିକ୍ ପତ୍ରପୁର ଘାଟକୁ ଲାଗି ନିର୍ମିତ ହେଉଛି ପୋଲଟିଏ– ବ୍ରାହ୍ମଣୀ ସେତୁ । କ୍ରେନ୍ ମୁଣ୍ଡ ଟେକିଛି, ଜମା ହୋଇଛି ଲୁହା, ସିମେଣ୍ଟ, ଅନ୍ୟାନ୍ୟ ଉପକରଣ । 'ଦୁଇଟି 'ପିଲାର୍' ତିଆରି ହୋଇସାରିଛି', କହିଲେ ଜଣେ ସ୍ଥାନୀୟ ଶିକ୍ଷକ, 'ଛତିଶି କ୍ୟାଲେଣ୍ଡର ମାସରେ ପୋଲଟି ସଂପୂର୍ଣ୍ଣ ହେବାର ଥିଲା । ହୋଇପାରିନି । ଏବେ ଜୋର୍‌ସୋର୍‌ରେ କାମ ଲାଗିଛି ।' X X X

କଟକ ଜିଲ୍ଲାର ଆଜି ସବ୍‌ଡ଼ିଭିଜନରେ ପତ୍ରପୁର ହାଇସ୍କୁଲ । ତାହାର ରଜତ ଜୟନ୍ତୀ ଉତ୍ସବରେ ଯୋଗଦେଇଥିଲୁ ଡକ୍‌ଟର କୃଷ୍ଣ ଚରଣ ସାହୁ ଓ ମୁଁ । ପତ୍ରପୁର ଘାଟ ପାରିହୋଇ ସ୍କୁଲ୍‌କୁ ଯିବାକୁ ହୁଏ ।

ସେଦିନ ସନ୍ଧ୍ୟାସାରା ମୋତେ ଆଚ୍ଛନ୍ନ କରି ରଖିଲା ସେଇ ଦୃଶ୍ୟଟି– ପତ୍ରପୁର ଘାଟ ଓ ବ୍ରାହ୍ମଣୀ ସେତୁ । ଆଉ ଅଳ୍ପ କେତେମାସ ପରେ ହୁଏତ କୌଣସି ମାନ୍ୟବର ମନ୍ତ୍ରୀ ବା ଉପମନ୍ତ୍ରୀ ଉଦ୍‌ଘାଟନ କରିବେ ବ୍ରାହ୍ମଣୀ ସେତୁ ଓ ତା'ପରେ ମ୍ୟାଜିକ୍ ଭଳି ବଦଳିଯିବ ଏହି ଅଞ୍ଚଳର ଚେହେରା । ନାଉରିଆମାନଙ୍କ ପଲ୍ଲା ଉଠିଯିବ, ଗାଉଁଲି ମଣିଷମାନେ ମୁହଁ ସଞ୍ଜବେଳେ ନଈ ପାରିହେବାକୁ କୂଳରେ ଠିଆ ହେବେ ନାହିଁ । ସେତୁ ଉପରେ ଘର୍ଘର ନାଦରେ ଗଡ଼ି ଚାଲିବ ଟ୍ରକ, ବସ୍, କାର । ପତ୍ରପୁର ଅଞ୍ଚଳଟି ଆଉ ମଫସଲ ହୋଇ ରହିବ ନାହିଁ, ରୂପାନ୍ତରିତ ହେବ ସହରରେ !

ସଞ୍ଜବେଳେ ଘରମୁହାଁ ବାଟୋଇର ନଈ ପାରିହେବାକୁ ବ୍ୟାକୁଳତା– କେତେ କବି, କଳାକାରଙ୍କୁ ଅନୁପ୍ରାଣିତ ନ କରିଛି ! ଉପେନ୍ଦ୍ର ଭଞ୍ଜଙ୍କଠାରୁ ନନ୍ଦକିଶୋରଙ୍କ ଯାଏଁ । ଡଙ୍ଗାରେ ନଈ ପାରିହେବା ଦୈନନ୍ଦିନ ଜୀବନର ଅନୁଭୂତିରୁ ନିର୍ବାସିତ ହେବାକୁ ଯାଉଛି ଖୁବ୍ ଶୀଘ୍ର !

'ବ୍ରାହ୍ମଣୀ ସେତୁ ତିଆରି ସରିଲେ ତୁମେମାନେ କ'ଣ କରିବ ?' ପଚାରିଲି ଜଣେ ନାଉରିଆକୁ ।

'କ'ଣ କରିବୁ, କେଜାଣି ।' ତା ଭବିଷ୍ୟତ ଅନିଶ୍ଚିତ । ଶୁଣିଲି, ମୋଟରେ ପ୍ରାୟ ପାଞ୍ଚଶହ ଲୋକ ପତ୍ରପୁର ଘାଟ ଉପରେ ନିର୍ଭର କରନ୍ତି ସେମାନଙ୍କ ଭରଣପୋଷଣ ପାଇଁ । କେତେକ ନାଉରିଆ 'ଏନାମେର୍' ଅଛନ୍ତି । ସରକାରଙ୍କଠାରୁ ଦିନକୁ ପାଆନ୍ତି ଛଅ ଟଙ୍କା ପଚାଶ ପଇସା, ଘାଟ ପାରିକଲେ ସାଇକେଲ ପିଛା ଦଶ ପଇସା । ସ୍କୁଟର, ମୋଟର ସାଇକେଲ ପାଇଁ ଟିକିଏ ବେଶୀ । କାର୍ ପାରିହୁଏ 'ଚାପଡ଼ଙ୍ଗା'ରେ । ଟ୍ରକ୍ ପାଇଁ 'କୋଶଳୀ ଡ଼ଙ୍ଗା' । ଜଣେ ନାଉରିଆ କହିଲା, 'ଅନେକ ଲୋକ 'ଡ଼ିଙ୍ଗି'ରେ ନଈ ପାରିହୋଇ ପଡ଼ନ୍ତି । ଡ଼ିଙ୍ଗି ଡ଼ଙ୍ଗାଠାରୁ ଶୀଘ୍ର ଯାଏ । ସେଇଥିପାଇଁ । ଏହା ଫଳରେ ଡଙ୍ଗା ବୋହୁଥିବା ନାଉରିଆର ବକ୍‌ସିସ୍ କମିଯାଉଚି ।'

ହୁଏତ କିଛି ମାସ ପରେ ନାଉରିଆ ଓ ସେମାନଙ୍କ ସମସ୍ୟାର ସମାଧାନ କରିଦେବ ବ୍ରହ୍ମଣୀ ସେତୁ । ନାଉରିଆମାନେ ଡଙ୍ଗାଟିମାନ ଛଡ଼ି ମୂଲଲାଗି ବାହାରି ପଡ଼ିବେ ସହରକୁ । ବ୍ରାହ୍ମଣୀ ନଦୀ ଜଳରେ ବୁଡ଼ିଯିବ, 'ଡଙ୍ଗା', 'ଡିଙ୍ଗି', 'କୋଶଳୀ' ଓ ଏହିପରି ଅନେକ ଶବ୍ଦ !!

ଯାହା ଘଟୁଚି ପତ୍ରପୁର ଘାଟରେ, ତାହାହିଁ ଘଟୁଚି ଦେଶସାରା । ଗାଁଆସବୁ ପରିଣତ ହେଉଛନ୍ତି ସହରରେ । ସହର ଅର୍ଥାତ୍ ଭଲ ରାସ୍ତା, ବିଜୁଳି ଆଲୁଅ, କୋଠାଘର । ପୁଣି ହୋଟେଲ, ସିନେମା, ଟେଲିଭିଜନ ଓ ଗାଁଆସବୁ ସହର ହେବାପାଇଁ କଟାଯାଉଚି ଜଙ୍ଗଲସବୁ, ଜୀବଜନ୍ତୁମାନେ ଧ୍ୱଂସ ପାଉଛନ୍ତି, ପାହାଡ଼ ସବୁ ଖଣ୍ଡ ଖଣ୍ଡ ହଣାହୋଇ ନିଃଶେଷ ହେଉଛନ୍ତି ।

ଦେଶକୁ ଶିଳ୍ପାୟିତ କରିବା ଓ ବଡ଼ ବଡ଼ ନଗର ଗଢ଼ିବା ପାଇଁ ଆମର ଉତ୍ସାହ ପ୍ରଚଣ୍ଡ । କିନ୍ତୁ ଏହି ଶିଳ୍ପ ଓ ନଗର ନିର୍ମାଣ ପାଇଁ ଆମେ ଯେ କି ବିପୁଳ ପ୍ରାକୃତିକ ସମ୍ପତ୍ତି ଓ ସୌନ୍ଦର୍ଯ୍ୟ ଧ୍ୱସ୍ତବିଧ୍ୱସ୍ତ କରିଚାଲିଛୁ, ତାହା ଭୁଲି ନଯିବା ଉଚିତ !

ଜହ୍ନ ରାତିରେ ପତ୍ରପୁର ଘାଟ ପାରି ହେଲାବେଳେ ଭାବୁଥିଲି– ଏପରି ଅନୁଭୂତି ପୁନର୍ବାର ଆସିବ ତ ! ☐

(୧୯୮୩)

# ରୁଷି ପାହାଡ଼ରେ ବାଘ

'ଅଳ୍ପ କେତେଦିନ ତଳେ ରୁଷି ପାହାଡ଼ରୁ ଗଡ଼ିଥିଲା ବାଘଟାଏ'– କହିଲେ ବନ୍ଧୁ ଭବେନ୍ଦ୍ର । ଏବଂ ଆମେ ତାଙ୍କ ଉକ୍ତିକୁ ହୁଏତ ସନ୍ଦେହ କରୁଥିବୁ, ଏଇ ଆଶଙ୍କାରେ ନିଜ ଉକ୍ତିର ବାଖ୍ୟା କଲେ, 'ମହାବଳ ନୁହେଁ ମ, ଏଇ କଲରାପତରିଆଟାଏ । ହେଇ– ଏମିତି ବସିଥିଲା ।' (ବନ୍ଧୁ ବାଘର ବସିବା ଭଙ୍ଗୀ ଦେଖାଇଲେ ।)

ବର୍ତ୍ତମାନ ବନ୍ଧୁଙ୍କ ବକ୍ତବ୍ୟରେ ଆମର ସଂପୂର୍ଣ୍ଣ ପ୍ରତ୍ୟୟ ଆସିଲା । ଅବଶ୍ୟ କେବେ ବାଘ ନ ଦେଖିଥିବା ବ୍ୟକ୍ତି ମଧ ବାଘର ବସିବାଭଙ୍ଗୀ ଅନ୍ୟମାନଙ୍କୁ ଦେଖାଇବା ଆଦୌ କଷ୍ଟସାଧ ନୁହେଁ । ଚୁଲିମୁଣ୍ଡରେ ବିଲେଇଟିଏ ଢାକିଢୁକି ହୋଇ ବସି ଦେହ ଚାଟିବା କିଏ ବା ନ ଦେଖିଛି ?

ତଥାପି ଯେ ରୁଷି ପାହାଡ଼ରେ ସତ୍ୟ ବା କାଳ୍ପନିକ ବାଘର ଆବିର୍ଭାବ ହେଉଛି, ଏହି ସମ୍ବାଦଟି ମୋତେ ପୁଲକିତ କଲା ଖୁବ୍ । ମଫସଲି ଜଙ୍ଗଲୀ ଇଲାକାସବୁ ନକଲି ସହରରେ ପରିଣତ ହେବା ପରେ ମଧ ତଥାପି ଯେ ବଞ୍ଚିରହିଛି କିଛି ଆଦିମ ରୋମାଞ୍ଚ– ମଣିଷ ସହିତ ଜଙ୍ଗଲ, ଗଛପତ୍ର ଓ ଅନ୍ଧାରର ସମ୍ପର୍କର କିଛି ନିଭୃତ ସ୍ମୃତି– ଏହା ମୋ ପାଇଁ ଥିଲା ପ୍ରଚଣ୍ଡ ଖରାଦିନରେ ଦମକାଏ ବର୍ଷା ପବନ । ଅନ୍ୟ ବନ୍ଧୁମାନଙ୍କ ପ୍ରତିକ୍ରିୟା ହୁଏତ ମୋ ଭଳି ନଥିଲା । କାରଣ ସେମାନେ ରହନ୍ତି ରୁଷି ପାହାଡ଼ ସମୀପରେ । ରୁଷିର ଚେହେରା ବା ରୁଷି ସମୀପରେ ଆତଯାତ ଜୀବଜନ୍ତୁ ସେମାନଙ୍କ ପାଇଁ ଖୁବ୍ ଆକର୍ଷଣ ନୁହନ୍ତି । କିନ୍ତୁ ରୁଷି ପାହାଡ଼ ସାନ୍ନିଧରେ ମୁଁ ପହଞ୍ଚିଥିଲି ଦୀର୍ଘ କୋଡ଼ିଏ ବର୍ଷ ପରେ । କୋଡ଼ିଏ ବର୍ଷ ପରେ ପ୍ରିୟ ବନ୍ଧୁଟିକୁ ଭେଟିବାର ଉତ୍ସୁକତାରେ ମୁଁ ଶୁଣିଥିଲି ରୁଷି ପାହାଡ଼କୁ ବାଘଟିଏ ଗଡ଼ି ଆସିବାର ସମ୍ବାଦ । X X X

ବ୍ୟକ୍ତିଜୀବନରେ କୋଡ଼ିଏ ବର୍ଷ ବେଶ୍ ଦୀର୍ଘ ସମୟ । କୋଡ଼ିଏ ବର୍ଷର ବ୍ୟବଧାନରେ ତରୁଣ ହୋଇପାରେ ମଧ-ବୟସ୍କ, ମଧବୟସ୍କ, ବୃଦ୍ଧ । କିନ୍ତୁ ତାହା ହିଁ କ'ଣ ସତ୍ୟ ଗୋଟିଏ ସମାଜ ବା ଜନପଦ ଜୀବନରେ ?

ହୁଏତ ନୁହେଁ । କିନ୍ତୁ ନୟାଗଡ଼ ସହରକୁ ଯେଉଁମାନେ ଚିହ୍ନିଥିଲେ କୋଡ଼ିଏ ବର୍ଷ ତଳେ, ଆଜି ସେମାନେ ସେହି ସହରକୁ ଦେଖିଲେ ବୁଝିପାରିବେ– କୋଡ଼ିଏ

ବର୍ଷ କି ଭୟଙ୍କର ପରିବର୍ତ୍ତନ ଆଣିପାରେ ଗୋଟିଏ କ୍ଷୁଦ୍ର ସହରରେ । କେବଳ ନୟାଗଡ଼ ନୁହେଁ, ଓଡ଼ିଶାର ବହୁ କ୍ଷୁଦ୍ର ସହର ହୁଏତ ରୂପାନ୍ତରିତ ହୋଇ ସାରିଛି ଗତ କୋଡ଼ିଏ ବର୍ଷ ଭିତରେ ।

କୋଡ଼ିଏ ବର୍ଷ ତଳର ନୟାଗଡ଼ ଓ ଆଜିର । କି ପରିବର୍ତ୍ତନ ଘଟିଛି ଯା ଭିତରେ ? ପ୍ରଶ୍ନଟିର ଉତ୍ତର ମୋ ପାଇଁ ଏହିପରି :

କୋଡ଼ିଏ ବର୍ଷ ତଳର ନୟାଗଡ଼ର ମୁଖ୍ୟ ନାୟକମାନେ ଥିଲେ ରୁଖି, ବଳରାମ, ଶୁଳିଆ ଓ ଅନ୍ୟାନ୍ୟ ପାହାଡ଼ଗଣ । ସେମାନଙ୍କ ସୌନ୍ଦର୍ଯ୍ୟ, ଗାରିମା ଓ ବିଶାଳତା ହିଁ ପ୍ରକଟାଉଥିଲା ଏଇ ଜନବିରଳ ସହରଟିର ବ୍ୟକ୍ତିତ୍ୱ । ଖଣ୍ଡପଡ଼ା ଛକ ନାମଧେୟ ଅଞ୍ଚଳଟିରେ ହିଁ ଥିଲା ଅଳ୍ପ କେତୋଟି ମଫସଲି ଦୋକାନ, କିଛି କୋଳାହଳ ଓ ବସ୍, ଟ୍ରକ୍ ଆଦି ଯାନମାନଙ୍କର ସମାଗମ । ରୁଖି ପାହାଡ଼ର ପାଦଦେଶରେ ସଦ୍ୟନିର୍ମିତ ଏକମହଲା କୋଠାଘରଟିରେ ଏଇ ମାତ୍ର ଆରମ୍ଭ ହୋଇଥିଲା କଲେଜଟିଏ ।

ନୀରବତା ଓ ପାହାଡ଼ୀ ଲ୍ୟାଣ୍ଡସ୍କେପ୍‌ର କ୍ୟାନଭାସରେ ଆଲୋକ ଓ ଅନ୍ଧାରର ଅପୂର୍ବ ପେଣ୍ଟିଂ– କୋଡ଼ିଏ ବର୍ଷ ତଳେ ନୟାଗଡ଼ର ଥିଲେ ଅନନ୍ୟ ଆକର୍ଷଣ । ଆଜି ନୟାଗଡ଼ର ମୁଖ୍ୟ ରାସ୍ତା କଟକ କଲେଜଛକଠାରୁ ଅଧିକ ଜନାକୀର୍ଣ୍ଣ । ଟ୍ରକ୍ ବସ୍‌ର ବିଭତ୍ସ ଚିତ୍କାର ବାଦାମବାଡ଼ିକୁ ସ୍ମରଣ କରାଇଦିଏ । ସହର ଦ୍ରୁତଗତିରେ ସଂକ୍ରମି ଯାଉଛି ପାହାଡ଼ ଉପରକୁ । ଖୋଲା ଜମିସବୁରେ ଯାଦୁ ପରି ମାଡ଼ି ଚାଲିଛି ଭେଲା ଭେଲା ଘର ।

କ୍ଷୁଦ୍ର ଉଦାହରଣଟିଏ ଏହିପରି ଦିଆଯାଉ । କୋଡ଼ିଏ ବର୍ଷ ତଳେ ନୟାଗଡ଼ କଲେଜ କମ୍ପାଉଣ୍ଡ୍‌ରେ ଆମେ ଦେଖିବାକୁ ପାଉଥିଲୁ ଗୋଟିଏ ମାତ୍ର ସ୍କୁଟର୍ । ସ୍ୱାଭାବିକ ଭାବେ ସ୍କୁଟରର ଅଧିକାରୀ ଅଧ୍ୟାପକଙ୍କର ସହରରେ ଥିଲା ସ୍ୱତନ୍ତ୍ର ପରିଚୟ ଓ ସ୍ୱାଭିମାନ । ସଂପ୍ରତି କଲେଜ କମ୍ପାଉଣ୍ଡ୍‌ରେ ସ୍କୁଟରର ସଂଖ୍ୟା ତିରିଶ ବା ତତୋଽଧିକ ।

ଏହି ପରିବର୍ତ୍ତନରେ ରୁଖି, ବଳରାମ, ଶୁଳିଆ ଓ ଅନ୍ୟାନ୍ୟ ପାହାଡ଼ମାନଙ୍କ ବ୍ୟକ୍ତିତ୍ୱରେ ଆଘାତ ଲାଗିଛି ସବୁଠାରୁ ବେଶୀ । ସେମାନେ ଆଉ ନୟାଗଡ଼ର ମୁଖ୍ୟ ନାୟକ ଭଳି ପ୍ରତିଭାତ ହେଉନାହାନ୍ତି– ସେମାନଙ୍କ ବୃକ୍ଷଲତା– ପଶୁପକ୍ଷୀ– ଝରଣାର ସାମ୍ରାଜ୍ୟ ଧ୍ୱସ୍ତବିଧ୍ୱସ୍ତ ହେବାକୁ ଯାଉଛି । ସେମାନଙ୍କ କିମ୍ବଦନ୍ତୀ ଓ ରହସ୍ୟ

ବିସ୍ମୃତପ୍ରାୟ । ସହର ନିର୍ମାତାମାନଙ୍କ ଆଖିରେ ସେମାନେ ଗୋଟାଏ ଗୋଟାଏ ପଥରଗଦା ଛଡ଼ା ଆଉ କିଛି ନୁହନ୍ତି । କଣ୍ଟ୍ରାକ୍ଟର୍‌ମାନେ ସେମାନଙ୍କୁ ଖଣ୍ଡ ଖଣ୍ଡ ହାଣି ପଇସା କମାଇବେ, ଏଇଥିପାଇଁ ଯେପରି ସେମାନେ ଅପେକ୍ଷା କରି ଆସିଥିଲେ ଆଦିମ କାଳରୁ ।

ରୁଖି ପାହାଡ଼ ପାଦଦେଶରେ ବସି ଆମେ କେତେଜଣ ବନ୍ଧୁ ଗପ ଜମାଇଥିବାବେଳେ ପାହାଡ଼ର ଖୁବ୍ ନିକଟରେ ପୋଲିସମାନଙ୍କ ପ୍ୟାରେଡ଼୍‌ର କର୍କଶ ଶବ୍ଦ ଶୁଭୁଥିଲା; ପାହାଡ଼ର ଅଣ୍ଟା ଉପରେ କୁଜଟାଏ ପରି ଦିଶୁଥିଲା ମଣିଷଗଢ଼ା ପଥରର କାନ୍ଥଟାଏ । ବାମନକାୟ ମନ୍ଦିରଟିଏ ପାହାଡ଼ ସେକତୁ ମୁଣ୍ଡଟେକି ଅନାଉଥିଲା ସନାତନୀମାନଙ୍କ କୁସଂସ୍କାର ପରି ! ନଜଲି ସହରର କୁତ୍ସିତ ବ୍ୟାଧିରେ ଆକ୍ରାନ୍ତ ଓ ଅଣନିଶ୍ୱାସୀ ମନେ ହେଉଥିଲା ରୁଖି ପାହାଡ଼ !

ସେଦିନ ବନ୍ଧୁମାନେ ପାହାଡ଼ ପର୍ବତହଣା ହେବାର ଗୋଟିଏ ଦୁଇଟି କରୁଣ କାହାଣୀ ଶୁଣାଇଲେ । ରୁଖି ଯେପରି ସେ କାହାଣୀ ଶୁଣୁଥିଲା ନୀରବ ଦୁଃଖରେ । ଦିନେ କ'ଣ ତା'ର ସକଳ ଗାରିମା ଖଣ୍ଡ ଖଣ୍ଡ ହୋଇ ଭୂପତିତ ହେବ ଏବଂ କବର ନେବ ସହରୀ ଘରମାନଙ୍କ ଚଟାଣରେ ? ନା ମଣିଷ ତାକୁ ସମ୍ମାନ ଦେଇ ଶିଖିବ ଓ ଶିଖିବ ସୁନ୍ଦର ପାହାଡ଼ୀ ପ୍ରକୃତିରେ ସୁନ୍ଦର ଜୀବନ ବଞ୍ଚିବା ପାଇଁ ?

ହୁଏତ ତଥାପି ସମୟ ଅଛି । ତଥାପି ତ ରୁଖି ପାହାଡ଼କୁ ଗଡୁଛନ୍ତି ସତ୍ୟ ବା କାଳ୍ପନିକ ବାଘମାନେ । ଆଶା କରାଯାଉ, ରୁଖି, ବଳରାମ, ଶୁଳିଆ ଓ ଅନ୍ୟାନ୍ୟ ପାହାଡ଼ମାନେ ବଞ୍ଚି ରହିବେ । ବଞ୍ଚିରହିବ ସେମାନଙ୍କ ସାମ୍ରାଜ୍ୟର ବୃକ୍ଷଲତା– ପଶୁପକ୍ଷୀ– ଝରଣା ସମ୍ପଦ । ତା ହେଲେ ହିଁ ତ ବଞ୍ଚିରହିବ ନୟାଗଡ଼ । ନୟାଗଡ଼ ବଞ୍ଚିରହୁ– ନୟାଗଡ଼ର ଅଧିବାସୀମାନେ ଏହା ଚାହାନ୍ତି ନିଶ୍ଚୟ ।। ❐

(୧୯୮୪)

# ଧଳଭୂମିଗଡ଼

ମୟୂରଭଞ୍ଜର ଯେଉଁଠାରେ ଓଡ଼ିଶାର ସୀମା ଶେଷ ହୋଇଛି, ସେଇଠୁ ଆରମ୍ଭ ହୋଇଛି ବିହାରର ବାହାଡ଼ାଗୋଡ଼ା–ଗୋଟିଏ ଛୋଟ ଗ୍ରାମ୍ୟ ସହର । ଏଇ ସହରଟି ସିଂହଭୂମି, ମେଦିନୀପୁର ଓ ମୟୂରଭଞ୍ଜ– ଏହି ତିନୋଟି ଜିଲ୍ଲା ମଧ୍ୟରେ ସଂଯୋଗ ରକ୍ଷାକରୁଛି । ବାହାଡ଼ାଗୋଡ଼ାଠାରୁ ରାଞ୍ଚି ବା ଜାମସେଦପୁର ଯିବା ବାଟରେ ପଡ଼େ ଏକ ସୁବିସ୍ତୀର୍ଣ୍ଣ ଶସ୍ୟଶ୍ୟାମଳ ଅଞ୍ଚଳ । ଦୁଇ ପାର୍ଶ୍ୱରେ ପ୍ରାଚୀର ପରି ଲମ୍ବିଯାଇଛି ପର୍ବତଶ୍ରେଣୀ । 'ବିହାରର ସୀମା ଆରମ୍ଭ' ବୋଲି ଯେଉଁଠାରେ ହିନ୍ଦୀ ଓ ଇଂରାଜୀ ଅକ୍ଷରରେ ପ୍ରକାଣ୍ଡ ନାମ ଫଳକ ସ୍ଥାପିତ, ସେହିଠାରୁ ରାସ୍ତା ହୋଇଛି ସୁପ୍ରଶସ୍ତ ଓ ମସୃଣ– ତାହା ଓଡ଼ିଶା ରାସ୍ତାପରି ସଙ୍କୀର୍ଣ୍ଣ ନୁହେଁ । ମଝିରେ ମଝିରେ ସଦ୍ୟ-ନିର୍ମିତ ଚମତ୍କାର ସରକାରୀ ଡାକବଙ୍ଗଳା ---- ମାଇଲ୍ ମାଇଲ୍ ବ୍ୟାପୀ ଶାଗୁଆନ ଜଙ୍ଗଲ । ମୟୂରଭଞ୍ଜର ନ୍ୟାରୋଗଜ ରେଲ ଲାଇନ ପରିବର୍ତ୍ତେ ଏଣିକି ବିଦ୍ୟୁତ-ଚାଳିତ ରେଲ୍‌ଗାଡ଼ି ଆଖିରେ ପଡ଼େ । ଏଇ ଲୋଭନୀୟ ତଥା ସମୃଦ୍ଧ ଅଞ୍ଚଳଟିର ନାମ ଧଳଭୂମିଗଡ଼ ।

ଜାମସେଦପୁରରୁ ଫେରିବା ରାସ୍ତାରେ ଅଳ୍ପ ସମୟ ପାଇଁ ଧଳଭୂମି-ଗଡ଼ରେ ଅଟକି ଯାଇଥିଲୁ ଆମେ କେତେ ଜଣ-ଡକ୍‌ଟର କୃଷ୍ଣ ପ୍ରସାଦ ମିଶ୍ର, ଶ୍ରୀ ଶାନ୍ତନୁକୁମାର ଆଚାର୍ଯ୍ୟ, ଶ୍ରୀ ଦୀନବନ୍ଧୁ ଶତପଥୀ ଓ ମୁଁ । ଓଡ଼ିଶାଠାରୁ ବିଚ୍ଛିନ୍ନ ଏଇ ଓଡ଼ିଆ ରାଜ୍ୟଟି ପାଇଁ ଆମ ସମସ୍ତଙ୍କର ଥିଲା ସ୍ୱାଭାବିକ ଭାବପ୍ରବଣତା । ପ୍ରଥମେ ଗୋଟିଏ ପାନ ଦୋକାନ ପାଖରେ ଠିଆହୋଇ ଲକ୍ଷ୍ୟ କଲୁ, ସମବେତ କେତୋଟି ଲୋକ ବିକୃତ ବଙ୍ଗଳାରେ କଥାଭାଷା ହେଉଛନ୍ତି । ପାନଦୋକାନୀକୁ ପଚାରିଲୁ, 'ଆପଣମାନେ ଓଡିଆ ବୋଲି ମନେ ହେଉଛନ୍ତି । ବଙ୍ଗଳାରେ କଥାଭାଷା ହେଉଛନ୍ତି କାହିଁକି ?' ଆମ କଥା ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କଲା ଏବଂ ଆଶ୍ଚର୍ଯ୍ୟର କଥା, ଯେଉଁମାନେ ଅଳ୍ପ ସମୟ ପୂର୍ବେ ବିକୃତ ବଙ୍ଗଳାରେ କଥାଭାଷା ହେଉଥିଲେ, ସେମାନେ ଓଡ଼ିଆରେ କଥାବାର୍ତ୍ତା ଆରମ୍ଭ କରିଦେଲେ । ପାନ ଦୋକାନୀ କହିଲେ– 'ଆମେ ସମସ୍ତେ ଓଡ଼ିଆ । ମୋ ନାଁ ଦେବୀପ୍ରସାଦ ମିଶ୍ର ।' ଅଳ୍ପ ସମୟ ମଧ୍ୟରେ ଆମକୁ ବହୁ ଲୋକ ଘେରିଗଲେ । ଆମେ ସେମାନଙ୍କ ସହିତ ଧଳଭୂମିର ଓଡ଼ିଆଭାଷା ଓ ସଂସ୍କୃତିର ଅବସ୍ଥା ସମ୍ପର୍କରେ ଆଲୋଚନା ଆରମ୍ଭ କରିଦେଲୁ । ଏହି ସମୟରେ

ହଠାତ୍ ଜଣେ ଭଦ୍ରବ୍ୟକ୍ତି ଉତ୍ତେଜିତ ହୋଇ ଅଳ୍ପ ଦୂରରୁ ଆମ ଆଡ଼କୁ ଚମକି ଆସିଲେ । ସାମାନ୍ୟ ଅପ୍ରସ୍ତୁତ ହୋଇ ଆମେ ତାଙ୍କ ଆଡ଼କୁ ଚାହିଁଲୁ ।

ସେ ମହାଶୟ ଉଚ୍ଚସ୍ୱରରେ କହୁଥିଲେ– 'ଆମି ଉଡ଼ିଆ । ଆମାର ନାମ କେଶବ ରଞ୍ଜନ ସାମଲ ।' ଆମ ଭିତରୁ କେହି ପ୍ରଶ୍ନକଲେ 'ଆପଣ ଓଡ଼ିଆ ହୋଇ ବଙ୍ଗଳାରେ କଥା କହୁଛନ୍ତି କାହିଁକି ?' ସେ ହସିଲେ ଓ ବଙ୍ଗଳାରେ କହିଲେ, 'ବିକୃତ ଓଡ଼ିଆ କଥା କହିବାକୁ ମୁଁ ପସନ୍ଦ କରେ ନାହିଁ । ଓଡ଼ିଆ ସଂସ୍କୃତି ସହିତ କୌଣସି ଯୋଗାଯୋଗ ନଥିବାରୁ ମୁଁ ଓଡ଼ିଆ ପଢ଼ିପାରୁନାହିଁ । ସେଥିପାଇଁ ମୁଁ ଲଜ୍ଜିତ । ଯଦି ସମୟ ଅଛି ଆସନ୍ତୁ– ଖାଲି ଭାଷାର କାହାଣୀ ନୁହେ, ଏ ମାଟିର କାହାଣୀ ମୁଁ କହିବି ।'

ଆମର ସ୍ୱଳ୍ପ ସମୟ ରହଣି ମଧ୍ୟରେ କେଶବବାବୁ ଆମକୁ ଧଳଭୂମିର ଓଡ଼ିଆ ଭାଷା ଓ ସଂସ୍କୃତି ଉପରେ ଯେଉଁ ଆକ୍ରମଣ ହୋଇଛି, ତାହାର ଏକ ଜୀବନ୍ତ ଚିତ୍ର ଦେଲେ । ସେ ମହାଶୟ ଜଣେ ହୋମିଓପାଥିକ୍ ଡାକ୍ତର । ଜାମସେଦପୁର ଇସ୍ପାତ କାରଖାନାରେ ବାରବର୍ଷ କାର୍ଯ୍ୟ କଲାପରେ ବିହାରୀ ନ ହୋଇଥିବାରୁ ତାଙ୍କୁ ଚାକିରୀରେ ସ୍ଥାୟୀ କରାଗଲା ନାହିଁ । ବର୍ତ୍ତମାନ ସେ ଡାକ୍ତରୀ କରୁଛନ୍ତି । ନିଜେ ବଙ୍ଗଳା କହୁଥିଲେ ମଧ୍ୟ ତାଙ୍କର ଓଡ଼ିଆ ଭାଷା ପ୍ରୀତି କ୍ୱଚିତ ଓଡ଼ିଆଙ୍କଠାରେ ଦେଖିବାକୁ ମିଳେ । ସେ କହିଲେ, ଅତୀତରେ ସିଂହଭୂମି ସହିତ ଓଡ଼ିଶାର ସାଂସ୍କୃତିକ ଯୋଗାଯୋଗ ରକ୍ଷା କରିବାକୁ ଉଦ୍ୟମ ହୋଇ ନଥିବାରୁ ଆଜି ଏ ଦୂରବସ୍ଥା । ଏପରିକି, ଏକ ସମୟରେ ସିଂହଭୂମିର ଓଡ଼ିଆମାନେ ଡକାୟତ ବୋଲି ପାର୍ଶ୍ୱବର୍ତ୍ତୀ ଜିଲ୍ଲାବାସୀ ଓଡ଼ିଆଙ୍କ ମଧ୍ୟରେ ଧାରଣା ଥିଲା । ଧଳଭୂମିରେ ବଙ୍ଗଳା ସଂସ୍କୃତିର ପ୍ରଚାର ହେଉଛି, ବଙ୍ଗଳାଯାତ୍ରା ଦଳ ଆସୁଛନ୍ତି । ବଙ୍ଗାଳୀଙ୍କର ପାଠାଗାର ଓ କ୍ଲବ୍ ଅଛି, ମାତ୍ର ଓଡ଼ିଆଙ୍କର କୌଣସି ସଂଗଠନ ନାହିଁ ।

କେଶବବାବୁ ଆମକୁ ସେ ଅଞ୍ଚଳର ପ୍ରଧାନ ପ୍ରଧାନ ବ୍ୟକ୍ତିମାନଙ୍କ ସହିତ ପରିଚୟ କରାଇଦେଲେ । ବୃଦ୍ଧ ଗୋପୀନାଥ ତ୍ରିପାଠୀ କହିଲେ– 'ଆମେ ଓଡ଼ିଆ କହୁଁ । ଆମର ଘରେ ଘରେ ଓଡ଼ିଆ ତାଳପତ୍ର ପୋଥି ଅଛି । ଆମର ଏଠି କପିଳେଶ୍ୱର ମନ୍ଦିର । ଆମ ନରସିଂହପୁରରେ ପ୍ରତିବର୍ଷ ରଥଯାତ୍ରା ହୁଏ ।' ଶ୍ରୀଯୁକ୍ତ ଚନ୍ଦ୍ରଶେଖର କର ସେ ଅଞ୍ଚଳର ମୁଖ୍ୟ ବ୍ୟକ୍ତି, ତାଙ୍କୁ ସମସ୍ତେ 'ନାନା' ଡାକୁଥିଲେ । ଆମେ ତାଙ୍କ ଘରକୁ ଗଲୁ । ସେ ବଙ୍ଗଳା ପାଞ୍ଜି ପଢୁଥିଲେ । କହିଲେ, 'ଆମର ଏଠାରେ ଶତକଡ଼ା ଅଶୀ ଲୋକ ଓଡ଼ିଆ । ଗୋଦାବରୀଶ ମିଶ୍ର ଏଠାରେ ଓଡ଼ିଆ ସ୍କୁଲ

ବସାଇଥିଲେ । ଆମେ ବହୁ କଷ୍ଟରେ ସେ ସ୍କୁଲ ଚଳାଇଲୁ । କିନ୍ତୁ ଓଡ଼ିଆ ସ୍କୁଲକୁ ବିହାର ସରକାର ସ୍ୱୀକୃତି ଦେଲେ ନାହିଁ । ତେଣୁ ସ୍କୁଲ ଭାଙ୍ଗିଗଲା । ଏଠି ଯେତେ ସ୍କୁଲସବୁର ହେଡ୍‌ମାଷ୍ଟରମାନେ ଓଡ଼ିଆ । ଅଧିକାଂଶ ପିଲା ଓଡ଼ିଆ । କିନ୍ତୁ ସବୁଠାରେ ବଙ୍ଗଳାରେ ପଢ଼ାହୁଏ । ଆଉ ଦଶବର୍ଷ ପରେ ଏଠି କେହି ଓଡ଼ିଆ ରହିବେ ନାହିଁ । ବର୍ତ୍ତମାନ ବି ଦୁଇଜଣ ଶିକ୍ଷକ ଓଡ଼ିଆ ପଢ଼ାଇବା ପାଇଁ ଗୋଟିଏ ସ୍କୁଲରେ ନିଯୁକ୍ତ ଅଛନ୍ତି ।'

କେଶବ ବାବୁ ଆମକୁ କପିଳେଶ୍ୱର ମନ୍ଦିର ଦେଖାଇବାକୁ ନେଲେ । ମାଟିତଳୁ ଆବିଷ୍କୃତ କୋଣାର୍କ ମନ୍ଦିରର ସୂର୍ଯ୍ୟ ମୂର୍ତ୍ତି ପରି ଅବିକଳ ମୂର୍ତ୍ତିଟିଏ ମନ୍ଦିର ପାର୍ଶ୍ୱରେ ସଂରକ୍ଷିତ ଥିଲା  ଧଳଭୂମି ଅଞ୍ଚଳର ସଦ୍ୟ ଆବିଷ୍କୃତ ମୁଦ୍ରାଗୁଡ଼ିକ ଅତି ପ୍ରାଚୀନ ବୋଲି ସେ କହିବାରୁ ସେଗୁଡ଼ିକୁ ଆମେ ଦେଖିବାକୁ ଚାହିଁଲୁ । ମାତ୍ର ଯାହାଙ୍କ ନିକଟରେ ସେ ମୁଦ୍ରାସବୁ ଅଛି, ସେ ମହାଶୟଙ୍କ ସହିତ ସାକ୍ଷାତ ହେଲାନାହିଁ । ତେବେ ଗୋଟିଏ ମାତ୍ର ମୁଦ୍ରା ଦେଖିବାକୁ ମିଳିଲା । କେଶବବାବୁଙ୍କ କହିବା ଅନୁସାରେ, ଗୋଟିଏ ଅତି ସୁଦୃଢ଼ ମାଟି ହାଣ୍ଡିରେ ପ୍ରାୟ ଦୁଇ କିଲୋଗ୍ରାମ ଓଜନର ମୁଦ୍ରା ନିକଟରେ ଏ ଅଞ୍ଚଳରୁ ଆବିଷ୍କୃତ ହୋଇଛି ।

ଧଳଭୂମିଗଡ଼ ଛାଡ଼ିବା ବେଳକୁ ପ୍ରାୟ କୋଡ଼ିଏ ଜଣ ଭଦ୍ରବ୍ୟକ୍ତି ଆମକୁ ଘେରି ଯାଇଥିଲେ । କେହି ଜଣେ କହିଲେ, 'ଆଜ୍ଞା, ଫଜଲ୍‌ଅଲ୍ଲିଙ୍କ ସୀମା କମିଶନ ଆମ ପ୍ରତି ଅନ୍ୟାୟକଲେ ।' ଆଉ କିଏ କହିଲେ, 'ଆମ ସିଂହଭୂମିର ଜଣେ ଓଡ଼ିଆ ନେତା ଆମ ପ୍ରତି ବିଶ୍ୱାସଘାତକତା କରିବାରୁ ଆମର ଏ ଅବସ୍ଥା ।' କେଶବ ବାବୁ କିନ୍ତୁ ଶେଷପର୍ଯ୍ୟନ୍ତ ସବୁଠାରୁ ବେଶୀ ଉତ୍ତେଜିତ ଜଣାପଡୁଥିଲେ । ସେ ବଙ୍ଗଳାରେ କହିଲେ, 'ଆମକୁ ବଙ୍ଗାଳୀମାନେ କହନ୍ତି ଓଡ଼ିଆ, ଓଡ଼ିଆମାନେ କହନ୍ତି ବିହାରୀ, ବିହାରୀମାନେ କହନ୍ତି ବଙ୍ଗାଳୀ । ଆମେ ତା' ହେଲେ କ'ଣ ?' ❒

(୧୯୬୭)

# ଦ୍ୱିତୀୟ ଭାଗ

ଥିଲେ ଯହିଁ ତହିଁ ଭାରତ ବକ୍ଷରେ,
ମଣିବି ମୁଁ ଅଛି ଆପଣା କକ୍ଷରେ ।

—ଗୋପବନ୍ଧୁ ଦାସ

# ଉତ୍ତର ଭାରତ : ଏକ ସଂକ୍ଷିପ୍ତ ଅନୁଭୂତି

## ଏକ

## ମଥୁରା

ମଥୁରା ସହର ଅକ୍ଲେଶରେ ପୁରୀ ମନେ ପକାଇଦିଏ । ଷ୍ଟେସନରେ ପଣ୍ଡାଙ୍କ ଦୌରାତ୍ମ୍ୟ, ସଂକୀର୍ଣ୍ଣ ଧୂଳିଧୂସରିତ ଗଳି ଓ ରାସ୍ତା, ରାସ୍ତା କଡ଼ରେ ଭିକାରୀ ଓ ସେମାନଙ୍କ ଛିଣ୍ଡା କନା ଓ ଲୋଟାକୋଟା ଟିଣ ବାସନ, ବହୁ କିମ୍ବଦନ୍ତୀରେ ରହସ୍ୟାବୃତ କ୍ଷୁଦ୍ର ବୃହତ୍ ଇତସ୍ତତଃ ମନ୍ଦିରମାଳା– ତୀର୍ଥରାଜ ମଥୁରାର ଏହାହିଁ ପରିଚୟ । ମଥୁରାରେ ପହଞ୍ଚି ମୁଁ ଓ ମୋର କେତେଜଣ ବନ୍ଧୁ 'ରାମ ଲକ୍ଷ୍ମଣ ଭରତ' କାହାନ୍ତି ବୋଲି ପଚାରିଲୁ । ଏମାନେ ଓଡ଼ିଶାରୁ ଆଗତ ଯାତ୍ରୀମାନଙ୍କର ପଣ୍ଡା; ଭଲ ଓଡ଼ିଆ କହିପାରନ୍ତି । ଅଳ୍ପ ସମୟ ପରେ ରାମଲାଲ୍ ପହଞ୍ଚିଗଲେ । ତାଙ୍କ ଘରକୁ ନେଇ ଓଡ଼ିଶାର କେତେଜଣ ବିଶିଷ୍ଟ ଲୋକ ତାଙ୍କ ଅତିଥି ହୋଇଥିବାର ପ୍ରମାଣ ଦେଖାଇଲେ । ତାଙ୍କ ମାଆ ଅନର୍ଗଳ ଓଡ଼ିଆ କହୁଥା'ନ୍ତି । 'ଆପଣ ଖୁବ୍ ଭଲ ଓଡ଼ିଆ କହୁଛନ୍ତି,' ମୁଁ କହିଲି । ସେ କହିଲେ, 'ଓଡ଼ିଶାର ଅନ୍ନ ଖାଉଛି, ଓଡ଼ିଆ କହିବି ନାହିଁ ?'

ମଥୁରାର ମନ୍ଦିରରେ ବୁଲିବାବେଳେ ଅଖଣ୍ଡାନନ୍ଦଜୀଙ୍କ କଥା ମନେ ପଡ଼ିଲା । ମଥୁରାକୁ ଆସିବା ବାଟରେ ବସ୍‌ରେ ସେ ମୋ ନିକଟରେ ବସି ଆସିଥିଲେ । ଆପାତତଃ ଶିକ୍ଷିତ ସୁରୁଚିସମ୍ପନ୍ନ ସନ୍ୟାସୀ । ମଥୁରାର କୌଣସି ଆଶ୍ରମରେ ରହନ୍ତି । ସେ କହୁଥିଲେ 'ମଥୁରା ସବୁ ଭାରତୀୟଙ୍କର । ଠିକ୍ ଯେମିତି ପୁରୀ, ଦ୍ୱାରକା, ବଦ୍ରୀନାଥ । ଆଜିର ରାଜନୀତିଜ୍ଞମାନେ ଜାତୀୟ ସଂହତି କଥା କହୁଛନ୍ତି । ଭାରତରେ କେବେ ଜାତୀୟ ସଂହତି ନ ଥିଲା ? କେବେ ଓଡ଼ିଶାରୁ ଯାତ୍ରୀମାନେ ମଥୁରା ଉତ୍ତର ପ୍ରଦେଶର ବୋଲି ଏଠାକୁ ଆସୁ ନଥିଲେ ? ଏଠାରେ ଜଣେ ପ୍ରସିଦ୍ଧ ସନ୍ନ୍ୟାସୀଙ୍କ ନାମ ପୂର୍ଣ୍ଣାନନ୍ଦ ତୀର୍ଥ– ସେ ଓଡ଼ିଆ ବୋଲି ତାଙ୍କୁ ସମସ୍ତେ 'ଉଡ଼ିଆ ବାବା' ଡାକନ୍ତି । ତାଙ୍କ ଆଶ୍ରମ ଖୁବ୍ ପ୍ରସିଦ୍ଧ ।'

ଅଖଣ୍ଡାନନ୍ଦଜୀ ଠିକ୍ କହୁଥିଲେ । ମଥୁରା ଓ ପୁରୀ ଭିତରେ ତଫାତ୍ କ'ଣ ? ଶ୍ରୀକୃଷ୍ଣ ଓ ଜଗନ୍ନାଥ ଏକ ଓ ଅଭିନ୍ନ ବୋଲି ତାତ୍ତ୍ୱିକମାନେ କହନ୍ତି । ସାଧାରଣ ଦୃଷ୍ଟିରେ ବି ଆଖିରେ ପଡ଼େ– ଉଭୟ ସହରରେ ଏକା ପରିବେଶ । ମଥୁରାରେ

ପୁରୀ ଭଳି ବିଭିନ୍ନ ଭାଷାଭାଷୀ ଲୋକଙ୍କ ଯାତାୟତ, ଭକ୍ତମାନଙ୍କ ସଂକୀର୍ତ୍ତନ, ପଣ୍ଡିତମାନଙ୍କ ଶାସ୍ତ୍ରପାରାୟଣ । ଜଗନ୍ନାଥଙ୍କ ଭାରତ, ଶ୍ରୀକୃଷ୍ଣଙ୍କ ଭାରତ ଅଭିନ୍ନ ।

ତେବେ ଧର୍ମ ଭାବରେ ଉଦ୍‌ବୁଦ୍ଧ ଭକ୍ତ ମଥୁରାରେ ଯାହା ଦେଖେ, ସାଧାରଣ ଟୁରିଷ୍ଟ ବା ପରିଦର୍ଶକ ଠିକ୍ ତାହା ଦେଖୁଥିବ ବୋଲି କୁହାଯାଇ ନ ପାରେ । ଭକ୍ତ ପାଇଁ ମଥୁରାର ଧୂଳି ଓ ନର୍ଦ୍ଦମା, ମନ୍ଦିର ଓ ଯମୁନା ନଦୀ ସବୁକିଛି ମହାନ୍ ଓ ପବିତ୍ର; କିନ୍ତୁ ପରିଦର୍ଶକ ମନରେ ସ୍ୱତଃ ପ୍ରଶ୍ନ ଉଠେ– ଭାରତର ବ୍ୟବସାୟୀ ଓ ଧନୀକଶ୍ରେଣୀର ଲୋକଙ୍କ ଅର୍ଥରେ ନୂଆ ନୂଆ ଗଢିଉଠୁଥିବା ମନ୍ଦିରଗୁଡ଼ିକ ଅଧିକ ରୁଚିସମ୍ପନ୍ନ ନ ହୋଇପାରୁଛି କାହିଁକି ? ଯେଉଁ ସ୍ଥାନଗୁଡ଼ିକରେ ଶ୍ରୀକୃଷ୍ଣ ବିହାର କରୁଥିଲେ ବୋଲି କୁହାଯାଉଛି, ତାହା ପଣ୍ଡାମାନଙ୍କ କଳ୍ପିତ ନୁହେଁ ତ ? କେଉଁଠି ଶ୍ରୀକୃଷ୍ଣ କାଳୀୟଦଳନ କରିଥିଲେ, କେଉଁଠି ଗୋପୀମାନଙ୍କ ବସ୍ତ୍ର ହରଣ କରିଥିଲେ ବା କେଉଁଠି କୁଞ୍ଜବନରେ ରାସଲୀଳା କରୁଥିଲେ, ପଣ୍ଡାମାନେ ତାହା ଜାଣିଲେ କିପରି ? ପୁଣି ମଥୁରା ସହରଟିକୁ ଅଧିକ ପରିଷ୍କାର ରଖିବାରେ ମଥୁରା ମ୍ୟୁନିସିପାଲିଟିର କ'ଣ କିଛି କର୍ତ୍ତବ୍ୟ ନାହିଁ ?

ପରିଦର୍ଶକ ଭାବରେ ନୁହେଁ, ଯାତ୍ରୀ ଭାବରେ ମଥୁରାକୁ ଆସିବା ଉଚିତ୍ । ତା'ହେଲେ ହୁଏତ ଲୋକଗହଳିରେ ଆପଣ ମୀରାବାଈ ବା ସୁରଦାସଙ୍କ ସାକ୍ଷାତ ପାଇବେ; ଯମୁନା ବାଲିରେ ବସିଲେ ଦୂରରୁ ଶ୍ରୀକୃଷ୍ଣଙ୍କ ଅସ୍ପଷ୍ଟ ବଂଶୀସ୍ୱର ଶୁଣିପାରିବେ । ମଥୁରାରେ ଶ୍ରୀକୃଷ୍ଣଙ୍କୁ ଦେଖି ପାରୁଥିବା ଲୋକଙ୍କର ଅଭାବ ନାହିଁ । ଅପରାହ୍ନରେ ଶ୍ରୀକୃଷ୍ଣ ଲୀଳାସ୍ଥଳୀ 'କୁଞ୍ଜବନରେ' ବୁଲୁଥିବାବେଳେ ଆମ ପଣ୍ଡା ଆମକୁ ବୁଝାଇ ଦେଲେ, 'ଏଇଠି ପ୍ରତି ରାତ୍ରରେ ଶ୍ରୀକୃଷ୍ଣ ରାସଲୀଳା କରନ୍ତି । ଭକ୍ତମାନେ ଦେଖିଛନ୍ତି ।'

କୁଞ୍ଜବନ ବୋଧହୁଏ ମଥୁରାର ସବୁଠାରୁ ଅଧିକ ଦର୍ଶନୀୟ ସ୍ଥାନ । ପ୍ରାଚୀନ ଅଥଚ ଚିରସବୁଜ ବୃକ୍ଷ ଓ ଲତାକୁଞ୍ଜରେ ସ୍ଥାନଟି ବାସ୍ତବିକ ରହସ୍ୟମୟ । ଚଟାଣକୁ ଭକ୍ତମାନେ ପ୍ରତି ସନ୍ଧ୍ୟାରେ ଓଳାଇ ସଫା କରନ୍ତି, ଶୁଖିଲା ପତ୍ରଟିଏ ବି ଚଟାଣରେ ରଖନ୍ତି ନାହିଁ । ରାତ୍ରିରେ ଶ୍ରୀକୃଷ୍ଣ ରାସଲୀଳା କରିବେ, ସେଇଥିପାଇଁ । ଆମେ କୁଞ୍ଜବନରେ ବୁଲୁଥିଲାବେଳେ ଧଳାଲୁଗାରେ ଆବୃତ କେତେଜଣ ଭକ୍ତ କୁଞ୍ଜବନର ଚଟାଣ ଓଳାଉଥିଲେ । ସେମାନଙ୍କ ଭକ୍ତି ଓ ଶ୍ରଦ୍ଧା ନିକଟରେ ଶ୍ରୀକୃଷ୍ଣ ନିଜକୁ ଅଦୃଶ୍ୟ ରଖୁନଥିବେ ନିଶ୍ଚୟ !

କୁଞ୍ଜବନର ଅଳ୍ପ ଦୂରରେ ଧର୍ମପରାୟଣ ମାରୁଓ୍ୱାଡ଼ିମାନଙ୍କ ରଙ୍ଗୀନ କୋଠାଘରସବୁ । ମୁଁ ମୋ ପଣ୍ଡାଙ୍କୁ କହିଲି, 'ଏଇ ଭାଗ୍ୟବାନ ମାରଓ୍ୱାଡ଼ିମାନେ ସବୁଦିନ ରାତ୍ରିରେ ଶ୍ରୀକୃଷ୍ଣଙ୍କ ରାସଲୀଳା ଦେଖୁଥିବେ ନିଶ୍ଚୟ ।' ମୋ ପଣ୍ଡା ଗମ୍ଭୀର ହୋଇ ମୋତେ ଚାହିଁଲେ । କହିଲେ, 'ହଁ, ନ ଦେଖିବେ କାହିଁକି ? ଖାଲି ସେମାନଙ୍କର ଦିବ୍ୟଚକ୍ଷୁ ଥିଲେ ହେଲା ।'

ମୁଁ ଯଦି ଆଉ କେବେ ମଥୁରାକୁ ଯାଏ, ତେବେ ଯାତ୍ରୀଭାବରେ ଯିବି, ପରିଦର୍ଶକ ଭାବରେ ନୁହେଁ ଏବଂ ମୋ ପଣ୍ଡାଙ୍କୁ ଆଉ ଏପରି ନିର୍ବୋଧ ପ୍ରଶ୍ନ ପଚାରିବି ନାହିଁ ।

## ଦୁଇ

## ରାଜପୁତର ଅତୀତ ଓ ବର୍ତ୍ତମାନ

ଜୟପୁରରୁ ଆଗ୍ରା ଫେରୁଥାଏ । ବାଟରେ ଷ୍ଟେସନ ନଥିବା ଗୋଟିଏ ସ୍ଥାନରେ ରେଲ୍‌ଗାଡ଼ିକୁ ଚେନ୍‌ଟାଣି ଅଟକାଇ ଦିଆଗଲା । ଧୋତି ଓ ପଗଡ଼ିପିନ୍ଧା ଡେଙ୍ଗା ମଣିଷସବୁ ଧାଡ଼ିହୋଇ ନିକଟବର୍ତ୍ତୀ ବିଲ ରାସ୍ତାରେ ଆସୁଥାନ୍ତି । ସେମାନଙ୍କ ପାଇଁ ଗାଡ଼ି ସେମିତି ଠିଆହୋଇ ରହିଲା । ସେମାନେ ବେଶ୍ ସହଜ ଓ ବେପରଓ୍ୱା ଭାବରେ ଆସି ରେଲ୍‌ଗାଡ଼ିରେ ଚଢ଼ିଲେ । ତା'ପରେ ରେଲ୍‌ଗାଡ଼ି ଛାଡ଼ିଲା, କିନ୍ତୁ ପରମୁହୂର୍ତ୍ତରେ ପୁଣି ଗାଡ଼ି ଅଟକିଲା । ଅଳ୍ପ କେତେଜଣ ଡେଙ୍ଗା ପଗଡ଼ିପିନ୍ଧା ମଣିଷ ବିଲ ଉପରେ ତଥାପି ରହି ଯାଇଛନ୍ତି । ସେମାନେ ବିଡ଼ି ଖାଇ ଖାଇ ରେଲ୍‌ଗାଡ଼ିରେ ଚଢ଼ିଲେ । ତା'ପରେ ଗାଡ଼ି ଛାଡ଼ିଲା ।

ଡିସେମ୍ବର ମାସର ସକାଳ । ଘଡ଼ିରେ ସାଢ଼େସାତଟା ବାଜିଥିଲେ ବି ସୂର୍ଯ୍ୟ ଉଇଁ ନଥାଏ । କମ୍ପାର୍ଟମେଣ୍ଟରେ ବସିଥିବା ସ୍ଥାନୀୟ ଜଣେ ଲୋକଙ୍କଠାରୁ ଶୁଣିଛି, ସବୁଦିନ ସକାଳେ ଏଇ ଲୋକମାନଙ୍କ ପାଇଁ ଗାଡ଼ି ଏମିତି ଅଟକେ । ଏ ଲୋକମାନେ ଗାଁଆରୁ ଆସନ୍ତି ସହରକୁ କାମକରିବା ପାଇଁ । ସେମାନଙ୍କ ଗାଁ ନିକଟରେ ଷ୍ଟେସନ ନାହିଁ । ତେଣୁ ଚେନ୍‌ଟାଣି କେହି ସେମାନଙ୍କ ପାଇଁ ଗାଡ଼ି ଅଟକାଏ । ସେମାନେ ଗାଡ଼ିରେ ଚଢ଼ି କାମକରିବା ପାଇଁ ନିକଟବର୍ତ୍ତୀ ସହରକୁ ଯାଆନ୍ତି ।

ରାଜପୁତ୍ ତାର ବୀରତ୍ୱ ଓ ଦୁର୍ଦ୍ଧର୍ଷତା ଆଜି ଯୁଦ୍ଧକ୍ଷେତ୍ରରେ ପ୍ରମାଣିତ କରିବାର ସୁଯୋଗ ଖୁବ୍ କମ୍; କିନ୍ତୁ ତା'ର ସ୍ୱାସ୍ଥ୍ୟ, ଉଚ୍ଚତା ଓ ଆଚାର ବ୍ୟବହାର ଦେଖିଲେ

ବୁଝିହୁଏ, ତା ରକ୍ତରେ ସେଇ ବୀରତ୍ୱ ନିଶ୍ଚିତ ଭାବରେ ବଞ୍ଚିରହିଛି । ଅବଲୀଳାକ୍ରମେ ଯେ କୌଣସି ସ୍ଥାନରେ ଯେତେ ସମୟ ରେଲ୍‌ଗାଡ଼ି ଅଟକାଇଦେବା, ସେଇ ବୀରତ୍ୱର ପ୍ରମାଣ ଛଡା ଆଉ କ'ଣ ହୋଇପାରେ !

ଜୟପୁର ନଗରରେ ଅଳ୍ପ କେତେଦିନ ରହିବା ଭିତରେ ରାଜପୁତ୍‌ର ଅତୀତ ଗୌରବ ଓ ଆଧୁନିକ ଯୁଗରେ ସେଇ ଗୌରବକୁ ବଞ୍ଚାଇ ରଖିବାର ଉଦ୍ୟମ ମୁଁ ଲକ୍ଷ୍ୟ କରିଥିଲି । ଜୟପୁର ନଗରଟିର ପରିକଳ୍ପନା ବେଶ୍ ଚମତ୍କାର । ଏହାର ରାଜବାଟୀ ଓ ତତ୍‌ସଂଲଗ୍ନ ବଜାରର ଏକ ଆକୃତିର ଗୃହସବୁ ଭାରତୀୟ ସ୍ଥାପତ୍ୟର ସୌନ୍ଦର୍ଯ୍ୟ ଓ ଗୌରବ ଘୋଷଣା କରୁଛନ୍ତି । ଏହାର ସୌଧଗୁଡ଼ିକରେ Pink ବା ଲୋହିତ ରଙ୍ଗର ବହୁତ ବ୍ୟବହାର ଏହାକୁ ଲୋହିତ ନଗର ବା Pink City ନାମରେ ମଧ ପରିଚିତ କରିଛି । କେତେକ କଲେଜ ଓ ସ୍କୁଲଗୃହ ସୁଦ୍ଧା ସୁରମ୍ୟ ସୌଧଭାବରେ ଦର୍ଶନୀୟ; କିନ୍ତୁ ନଗରର ସବୁଠାରୁ ମହାର୍ଘ ସୌଧ 'ରାଜମନ୍ଦିର' ଜ୍ଞାନ ଓ ସୁରୁଚିର ଅଭାବରେ ଏକ ହାସ୍ୟାସ୍ପଦ ଉଦ୍ୟମରେ ପରିଣତ ହୋଇଛି । 'ରାଜମନ୍ଦିର' ଏସିଆର ସବୁଠାରୁ ସୁନ୍ଦର ସିନେମାଗୃହ ବୋଲି ପ୍ରଚାର କରାଯାଉଥିବା ସତ୍ତ୍ୱେ ରାଜପୁତ୍ ବୀରତ୍ୱ ରେଲ୍‌ଗାଡ଼ି ଚେନ୍ ଟାଣିବାରେ ପ୍ରକାଶିତ ହେଲାଭଳି, ଆଧୁନିକ ରାଜପୁତ ସ୍ଥାପତ୍ୟ ନିଛକ୍ ରୁଚିହୀନତାରେ ପରିଣତ ହୋଇଛି; କିନ୍ତୁ ରାଜପୁତ ଯେ ତଥାପି ଅଜସ୍ର ଅର୍ଥ ବ୍ୟୟରେ ଚମତ୍କାର ଅଟ୍ଟାଳିକା ନିର୍ମାଣ କରିବାରେ ଆଗ୍ରହୀ, ଏହା ଅସ୍ୱୀକାର କରାଯାଇ ନ ପାରେ ।

## ତିନି

## ରେଲ୍ ଯାତ୍ରାର ରୋମାଞ୍ଚ

ଦିନ ଦିନ ଧରି ରେଲ୍ ଗାଡ଼ିରେ ବସି ଭାରତର ଗୋଟିଏ ସ୍ଥାନରୁ ଅନ୍ୟ ଗୋଟିଏ ସ୍ଥାନକୁ ଯାତ୍ରାକଲେ ବାସ୍ତବିକ ଭାରତର ବିସ୍ତୃତି ଓ ବୈଚିତ୍ର୍ୟ ସମ୍ପର୍କରେ ଅନେକ କିଛି ବୁଝିହୁଏ । ପୃଥିବୀର ଅଧିକାଂଶ ଦେଶରେ ରେଲ୍‌ଗାଡ଼ିରେ ଦେଶର ଗୋଟିଏ ସୀମାରୁ ଅନ୍ୟ ସୀମାରେ ପହଞ୍ଚିବାକୁ ଅଳ୍ପ କେତେଘଣ୍ଟା ସମୟ ଲାଗୁଥିବ । ତେଣୁ ଭାରତରେ ରେଲ୍‌ଯାତ୍ରାର ଅନୁଭୂତି ଅନ୍ୟତ୍ର ମିଳିବା ସହଜ ନୁହେଁ ।

ପୁଣି ଭାରତରେ ରେଲ୍‌ଯାତ୍ରାକୁ ଅନାବଶ୍ୟକଭାବେ ଦୀର୍ଘ କରିବାରେ ଭାରତ ସରକାର ଅନେକ ସମୟରେ ସାହାଯ୍ୟ କରନ୍ତି । ଅନ୍ତତଃ ଉତ୍କଳ ଏକ୍‌ସପ୍ରେସରେ

ଭୁବନେଶ୍ୱରରୁ ଆଗ୍ରା ଯିବାବେଳେ ମୋର ତାହାହିଁ ମନେ ହେଉଥିଲା। ଭୁବନେଶ୍ୱରରୁ ଟାଟା–ଟାଟାରୁ ରାଉରକେଲା– ଏମିତି ଚକା ଚକା ଭଉଁରୀ ଖେଳି, ଭୁବନେଶ୍ୱରରୁ ଆଗ୍ରାରେ ପହଞ୍ଚିବାକୁ ଏହି ଦ୍ରୁତଗାମୀ ଯାନଟିକୁ ଲାଗେ ପ୍ରାୟ ଛତିଶ ଘଣ୍ଟା ।

ତେବେ ଭାରତୀୟମାନେ ସେମାନଙ୍କ ସ୍ଥଳଭାଗର ଅସୀମତା ଓ ସମୟର ଚିରନ୍ତନତାରେ ବିଶ୍ୱାସ କରୁଥିବାରୁ ରେଳଗାଡ଼ିଟିରେ କେତୋଟି ଦିନ ବା ସପ୍ତାହ କଟାଇବାରେ ବିଶେଷ କ୍ଲାନ୍ତି ଅନୁଭବ କରନ୍ତି ନାହିଁ। ମୋ କମ୍ପାର୍ଟମେଣ୍ଟରେ ବସିଥିବା ଅଧିକାଂଶ ଭଦ୍ରବ୍ୟକ୍ତି ଭଦ୍ରମହିଳାଙ୍କର ଗନ୍ତବ୍ୟସ୍ଥଳ ଥିଲା ଦିଲ୍ଲୀ; ଆଗରୁ 'ସ୍ଲିପର୍' ରିଜର୍ଭ ହୋଇଥିଲା । ସେମାନଙ୍କ ମୁଖର ପ୍ରଶାନ୍ତି ଓ ଉଦାର ଭାବ ଦେଖିଲେ ମନେ ହେଉଥିଲା, ସେମାନେ ଯେପରି ପରସ୍ପରକୁ କହୁଛନ୍ତି– ଡର ଡର କାହିଁକି ? ଦିଲ୍ଲୀ ତ ବହୁତ ଦୂର !

ଡିସେମ୍ବର ମାସର ଶେଷ ସପ୍ତାହ । ବଡ଼ଦିନ ଛୁଟି । ଦେଶର ବିଭିନ୍ନ ସ୍ଥାନରେ ସର୍ବଭାରତୀୟ ସମ୍ମିଳନୀମାନ ଅନୁଷ୍ଠିତ ହେବାର କୌଣସି କାରଣରୁ ଏହାହିଁ ପ୍ରକୃଷ୍ଟ ସମୟ । ଉତ୍କଳ ଏକ୍‌ସପ୍ରେସ୍‌ର ଦିଲ୍ଲୀ ବଗିର ବିଭିନ୍ନ ବର୍ଥ୍ ଉପରେ ବସି ରହିଥିବା ଅଧିକାଂଶ ଯାତ୍ରୀ ବିଭିନ୍ନ ସମ୍ମିଳନୀରେ ଯୋଗଦେବାପାଇଁ ଉତ୍ତର ଭାରତ ଯାଉଥିଲେ । ମୁଁ ବି ଥିଲି ସେମାନଙ୍କ ଭିତରୁ ଜଣେ ।

ମୁଁ ଘରୁ ବାହାରିବା ସମୟରେ ମୋ ସ୍ତ୍ରୀ ମୋ ଜିନିଷପତ୍ରର ନିରାପତ୍ତା ସମ୍ପର୍କରେ ମୋତେ ସଚେତନ କରିଦେଇଥିଲେ । ତେଣୁ ପ୍ରତି ପାଞ୍ଚ ମିନିଟରେ ମୁଁ ଥରେ ମୋ ଜିନିଷପତ୍ର ଉପରେ ଆଖି ବୁଲାଇ ଆଣୁଥିଲି ଓ କମ୍ପାର୍ଟମେଣ୍ଟରେ ପ୍ରବେଶ କରୁଥିବା ପ୍ରତ୍ୟେକଙ୍କୁ ଭଲକରି ନିରୀକ୍ଷଣ କରୁଥିଲି । ଆମରି ନିକଟତମ ବ୍ୟକ୍ତିଟି ଯେ ଚୋର ହୋଇ ନଥିବ, କିଏ କହିବ ? ପ୍ରଥମେ ଭୁଲ୍ କମ୍ପାର୍ଟମେଣ୍ଟରେ ପଶି, ନିଜର ସଂରକ୍ଷିତ ସ୍ଥାନଟି ପାଇବାରେ ସାମାନ୍ୟ ବିଳମ୍ବ କରି, ମୁଁ ଟିକିଏ ବିଚଳିତ ହୋଇପଡ଼ିଥିଲି । ଏତେ ଦୀର୍ଘଯାତ୍ରା ନିରାପଦରେ କଟିବ ତ ?

ମୋ କମ୍ପାର୍ଟମେଣ୍ଟର ଅନ୍ୟ ଯାତ୍ରୀମାନେ କିନ୍ତୁ ସନ୍ତୁଷ୍ଟ ଓ ଆତ୍ମନିର୍ଭରଶୀଳ ଦେଖାଯାଉଥିଲେ । ଗାଡ଼ି କଟକ ଛାଡ଼ିବା ପରେ ପରେ ହିଁ ସେମାନେ ରାତ୍ରି ବିଶ୍ରାମ ପାଇଁ ନିଜକୁ ପ୍ରସ୍ତୁତ କରିବା ଆରମ୍ଭ କରିଦେଲେ । ଯୋତା ଖୋଲି ସ୍ଲିପର ପିନ୍ଧିବା, ମୁଣ୍ଡରେ ମଫ୍‌ଲର୍‌ଟି ଭିଡିବା, ଟିଫିନ୍ କ୍ୟାରିୟର୍‌ରୁ ପରଟା ଓ ଆଳୁଭଜା ଇତ୍ୟାଦି

ଖାଇବା ଆରମ୍ଭ ହୋଇଗଲା । କେହି କେହି ସିଗାରେଟ୍‌ରେ ନିଆଁ ଧରାଇ ଝରକା ବାଟେ ବାହାରର ଅନ୍ଧାରକୁ ଅନାଇ ରହିଲେ । ବିଳମ୍ବରେ ଶୋଇବା ହୁଏତ ସେମାନଙ୍କ ଅଭ୍ୟାସ ।

କେତେବେଳେ ଯାତ୍ରୀମାନଙ୍କ ମଧ୍ୟରେ ପରସ୍ପରର ପରିଚୟ ଦାନ ଓ ଆଳାପ ଆଲୋଚନା ବି ଆରମ୍ଭ ହୋଇଯାଇଥିଲା । ମୋ ସାମ୍ନାରେ ଯେଉଁ ଭଦ୍ରଲୋକ ନୀରବରେ ଟିଫିନ୍ କ୍ୟାରିଅର୍‌ରୁ କେକ୍ ଖାଉଛନ୍ତି, ସେ କର୍ଣ୍ଣେଲ ମିତ୍ର । ଦିଲ୍ଲୀରେ ପେନ୍‌ସନର୍‌ମାନଙ୍କ କୌଣସି ମିଟିଂରେ ଯୋଗଦେବାକୁ ଯାଉଛନ୍ତି । ସେ ରେଲ୍ ଯାତ୍ରାରେ ଅଭ୍ୟସ୍ତ ମନେ ହେଉଛନ୍ତି । ଉପର ବର୍ଥରେ ଶାୟିତ ଶ୍ରୀରାମ କ୍ରିଷ୍ଣେୟା । କୌଣସି ପଶୁପାଳନ କଲେଜ୍‌ରେ ଅଧ୍ୟାପକ । ନିଜର ପରିଚୟ ଘୋଷଣା କଲା ପରେ ସେ ତାଙ୍କ କଲେଜରେ ଦୁଗ୍ଧ ଓ ଅଣ୍ଡାକୁ ନେଇ କିଭଳି ଦୁର୍ନୀତି ଚାଲିଛି, ସେ ସମ୍ପର୍କରେ ଭାଷଣଟିଏ ଆରମ୍ଭ କରିଛନ୍ତି । ଡାକ୍ତର ବେହୁରା ଗମ୍ଭୀର ହୋଇ ସିଗାରେଟ୍ ଟାଣୁଛନ୍ତି, ନୀରବ ରହିବା ସମ୍ମାନଜନକ ବୋଲି ଯେପରି ସେ ବିଶ୍ୱାସ କରନ୍ତି । କେହି କେହି ଢୁଳାଇବାକୁ ଆରମ୍ଭ କଲେଣି ।

ଟ୍ରେନ୍ ଚାଲିଛି । ବାହାରେ ମଧ୍ୟରାତ୍ର ଓ ଅନ୍ଧାର । ପ୍ରଥମେ ଷ୍ଟେସନ ସବୁ ଜଣାପଡୁଥିଲେ ସ୍ୱତନ୍ତ୍ର ଓ ପରିଚିତ । ତା'ପରେ ଖାଲି ଷ୍ଟେସନ୍...ଷ୍ଟେସନ୍...ସବୁ ଷ୍ଟେସନ୍ ଏକାପରି । କେତେ ରାସ୍ତା ପଛରେ ରହିଲାଣି ? ଓ କେତେରାସ୍ତା ଆଗକୁ ଅଛି ? ଟ୍ରେନ୍‌ର ଶବ୍ଦ ଓ ବାହାରର ଅନ୍ଧାରରେ ସେ ସବୁର ତ କୌଣସି ସୂଚନା ନାହିଁ ।

ପରଦିନ ସକାଳେ ନିଦଭାଙ୍ଗିଲା । ବାହାରକୁ ଅନାଇଲି । ଜଳନ୍ତା ନିଆଁ ଚାରିପାଖେ ଦଳେ କଳା ଅଧାଲଙ୍ଗଳା ମଣିଷ ବସିଛନ୍ତି । ପ୍ରାଚୀନ ପ୍ରସ୍ତର ଯୁଗର ମଣିଷ ? କର୍ଣ୍ଣେଲ୍ ମିତ୍ର କହୁଛନ୍ତି, 'ଆଗରେ ଟାଟା ।' ଶିଳ୍ପନଗରୀ ଯେମିତି ତା'ର ଚିମ୍‌ନୀର ଦାନ୍ତ ଦେଖାଇ ପୁଙ୍ଗା ବଜାଇ ବଜାଇ ଆମ ଆଡ଼କୁ ଧାଇଁ ଆସୁଛି ! ସେହି ଅଧା ଲଙ୍ଗଳା ମଣିଷସବୁ ନିଆଁ ପୋଉଁ ପୋଉଁ କେଉଁଠି ପଛରେ ହଜିଗଲେଣି ।

ଦୁଇ କଡ଼ରେ ଲମ୍ବିଯାଇଛି ସମତଳ ଭୂମି–ସୀମାହୀନ, ଶୁଷ୍କ । ମଝିରେ ମଝିରେ ଶସ୍ୟକ୍ଷେତ୍ର କିମ୍ବା ନାଲି–ହଳଦିଆ ରଙ୍ଗଲେପା ଖପରୁଲୀ ଘରର ଗାଁ । ଏଠି ସେଠି ବଡ଼ ବଡ଼ ଗଛ; ପୃଷ୍ଠଭୂମିରେ ପାହାଡ଼ଗଦା । ମହାବୀର, ବୁଦ୍ଧ, ଅଶୋକଙ୍କ କର୍ମଭୂମି ଏଇ ବିହାର–ସେମାନଙ୍କ ସମୟରୁ ଯେପରି ବଦଳିନାହିଁ ! ଏଇ ସୀମାହୀନ

ରୁକ୍ଷ ସ୍ଥଳଭାଗ ଭିତରେ କେଉଁଠି ଛପିଯାଇଚି ଟାଟାର ଲୁହା କାରଖାନା, ଆଧୁନିକତାର ଶିଳ୍ପ ବିପ୍ଳବ ? ଏଇ ସୀମାହୀନ ଶୁଖିଲା ମାଟି କାହାର ସ୍ୱପ୍ନ ଦେଖୁଛି– ବର୍ଷାର ନା ଚିମ୍‌ନୀ ଧୂଆଁର ?

ଏଇ ତେବେ ଚମ୍ବଲ ଉପତ୍ୟକା ? ବିହାର ପଛରେ ରହିଲାଣି, ଆରମ୍ଭ ହୋଇଚି ମଧ୍ୟପ୍ରଦେଶ । ମାଇଲ୍ ମାଇଲ୍ ଲମ୍ବିଯାଇଛି ଖାଲ ଢିପ ଧୂସର ଜମି– ମଝିରେ ମଝିରେ କଣ୍ଟାବୁଦା । ଦୁର୍ଦ୍ଧର୍ଷ ଡକାୟତମାନେ ଏଇ ଉପତ୍ୟକାଟିକୁ ସେମାନଙ୍କ କର୍ମଭୂମି ବୋଲି ବାଛିନେବାର ଆଶ୍ଚର୍ଯ୍ୟ କିଛି ନାହିଁ । ଅଳ୍ପ କେତେହାତ ଦୂରରେ ଠିଆହୋଇଥିବା ମଣିଷ ବି ଅତି ସହଜରେ ଏଠାରେ ଆତ୍ମଗୋପନ କରିପାରିବ । ସ୍ଥାନେ ସ୍ଥାନେ ଅପେକ୍ଷାକୃତ ବୃହତ୍ ସମତଳ ଅଞ୍ଚଳମାନଙ୍କୁ ଶସ୍ୟକ୍ଷେତ୍ରରେ ପରିଣତ କରାଯାଇଛି । ସୋରିଷ, ହରଡ, ଗହମ ଚାଷ ହେଉଛି ।

କମ୍ପାର୍ଟମେଣ୍ଟର ଯାତ୍ରୀମାନେ ସେମାନଙ୍କ ଭିତରେ ବିଭିନ୍ନ ବିଷୟରେ ଆଲୋଚନା କରୁଛନ୍ତି । ଏହା ଭିତରେ ସେମାନେ ପରସ୍ପରକୁ ଭଲଭାବେ ଜାଣିଲେଣି, ସେମାନଙ୍କ ଆଲୋଚନାରୁ ଏହା ସ୍ପଷ୍ଟ ହେଉଛି । ଚରଣ ସିଂହଙ୍କଠାରୁ ଉତ୍ତର ଭାରତର ଶୀତ ପର୍ଯ୍ୟନ୍ତ, ରେଲୱେ ମିଲ୍‌ଠାରୁ ଭାରତର ଆରମଡ୍‌ଫୋର୍ସ୍ ପର୍ଯ୍ୟନ୍ତ– ସବୁ କିଛିର ଆଲୋଚନା ଚାଲିଛି ।

ବାହାରେ ଆମ ସମ୍ମୁଖରେ ଜୀବନ୍ତ ଭାରତବର୍ଷ–ନଦୀ, ପର୍ବତ, ଶସ୍ୟକ୍ଷେତ୍ର, ଗାଁ, ଗାଈପଲ । ଆମ ଆଲୋଚନା ସହିତ ଏଇ ଭାରତବର୍ଷର ସମ୍ପର୍କ କେଉଁଠି ? ଆମ ଆଖି ଆଗରେ ଭାସିଯାଉଥିବା ଗାଁଆସବୁର ଲୋକେ କେବେ ବୁଝିବେ– କର୍ଣ୍ଣେଲ ମିତ୍ର, ପଶୁପାଳନ ଅଧ୍ୟାପକ ରାମ କ୍ରିଷ୍ଣେୟା, ଡାକ୍ତର ବେହୁରା ସେମାନଙ୍କ ସମ୍ପର୍କରେ କ'ଣ ଭାବନ୍ତି ?

ଆଗ୍ରା ଷ୍ଟେସନ୍ ଆଉ ଅଳ୍ପଦୂର । ଆମେ ଆଗ୍ରାରେ ଓହ୍ଲାଇବା ଯାତ୍ରୀମାନେ ନିଜ ନିଜର ବେଡ଼ିଂ ଓ ସୁଟ୍‌କେଶ୍ ବାନ୍ଧୁଛୁ । (ନା–ମୋର ଜିନିଷପତ୍ର ନିରାପଦ ଅଛି । ଏତେ ଭଦ୍ରଲୋକଙ୍କ ଭିତରେ ଚୋର ଆସିବେ କେଉଁଠୁ ?) ଛତିଶ ଘଣ୍ଟାର ରେଲ୍‌ଯାତ୍ରା ଶେଷହୋଇଛି– ଆଉ ଥରେ ଏଇ ବିରାଟ ଦେଶ ଦର୍ଶନ କରିବାର ରୋମାଞ୍ଚକର ଅନୁଭୂତି ବି... । ❒

(୧୯୭୯)

# ଅରୋଭିଲ୍ : ଉଷାର ସହର

ଆୟାପାନ୍ ଅରୋଭିଲ୍ ସହରର ପ୍ରବେଶପଥରେ ଗାଡ଼ି ଅଟକାଇଲା । ନିକଟସ୍ଥ ଫଳଉଦ୍ୟାନ ମଧ୍ୟରୁ ବାହାରି ଆସିଲା ବିଶାଳକାୟ ଗୋରା ଲୋକଟିଏ । ମାଟି ଉପରେ ଅଙ୍ଗୁଳିରେ ଗାରପକାଇ ଲୋକଟି ଅରୋଭିଲ ସହରର ଦର୍ଶନୀୟ ସ୍ଥାନଗୁଡ଼ିକ ପ୍ରବଳ ଉତ୍ସାହରେ ବର୍ଣ୍ଣନା କରିଚାଲିଲା ।

ଏପ୍ରିଲ ମଧ୍ୟାହ୍ନର ପ୍ରଚଣ୍ଡ ନିଦାଘରେ ସୁଦ୍ଧା ଅସଂଖ୍ୟ ଆମ୍ବ, ପଣସ, ଲଙ୍କାଆମ୍ବ, ତାଳ ଓ ନିମବୃକ୍ଷ ଅରୋଭିଲକୁ କରିଥାଏ କେତେକାଂଶରେ ଶୀତଳ ଓ ଛାୟାପ୍ରଦ । ଆମ ଦଳରେ ଥିବା କେହି କେହି ବୃକ୍ଷଡ଼ାଳରୁ କଞ୍ଚାଆମ୍ବ କିମ୍ବା ପାଚିଲା ଲଙ୍କାଆମ୍ବଟିଏମାନ ତୋଳି କୈଶୋରର ଦିନସବୁ ସ୍ମରଣ କରାଇ ଦେଲେ । ଆମେ ପ୍ରାୟ ପନ୍ଦରଜଣ ଟୁରିଷ୍ଟ ଆସିଥିଲୁ ଅରୋଭିଲ ଦର୍ଶନ ପାଇଁ । ଆମ ଦଳରେ ଥିଲେ ଗୋଟିଏ ଡଚ୍ ପରିବାରର ପୁରୁଷ, ସ୍ତ୍ରୀ ଓ ସାତ ଆଠ ବର୍ଷର ପୁଅ । ଆୟାପାନ ଆମର ଡ୍ରାଇଭର ଓ ଗାଇଡ୍ । ଫରାସୀ କାଇଦାରେ ଦାଢ଼ି ରଖୁଥିଲା, ଖୁବ୍ ସଚେତନ ଭାବରେ ଇଂରେଜ ଲୋକଙ୍କ ଉଚ୍ଚାରଣକୁ ଅନୁକରଣ କରି ଇଂରାଜୀ କହୁଥିଲା । ଡଚ୍ ପରିବାରଟି ସହିତ କଥୋପକଥନରେ ନିଜ ଚତୁରତା ଓ ଇଂରାଜୀ ଜ୍ଞାନର ପରିଚୟ ଦେବା ପାଇଁ ତା'ର ବ୍ୟାକୁଳତା ସହଜରେ ବୁଝି ହେଉଥିଲା ।

ପଣ୍ଡିଚେରୀଠାରୁ ପ୍ରାୟ ଦଶ କିଲୋମିଟର ଦୂରରେ ଆଠ ଶହ ବର୍ଗହେକ୍ଟର ଜମି ଉପରେ ଅରୋଭିଲ ସହରର ପରିକଳ୍ପନା । 'ଅରୋଭିଲ' ଶବ୍ଦର ଅର୍ଥ 'ଉଷାର ସହର' । ଏହା ଶ୍ରୀ ଅରବିନ୍ଦ ଓ ଶ୍ରୀମା'ଙ୍କ ପରିକଳ୍ପିତ ଭବିଷ୍ୟତ ମଣିଷ ସମାଜର ପ୍ରତୀକ । ଏହି ସହର ସଂପୂର୍ଣ୍ଣ ହେଲେ ଏଥିରେ ପ୍ରାୟ ପଚାଶ ହଜାର ବ୍ୟକ୍ତି ବାସ କରିବେ । ସେମାନେ ପ୍ରତିନିଧିତ୍ୱ କରିବେ ପୃଥିବୀର ବହୁ ଦେଶ, ଜାତି, ଭାଷା ଓ ଧର୍ମର । ସକଳ ସଂକୀର୍ଣ୍ଣତାର ଊର୍ଦ୍ଧ୍ୱରେ ସମଗ୍ର ମାନବ ଜାତିର ଏକତା ଓ ମିଳନର ପ୍ରତୀକ ହେବ ଅରୋଭିଲ୍ । 'ଅରୋଭିଲ୍ ଯଥାର୍ଥରେ ଏକ ଆନ୍ତର୍ଜାତିକ ନଗର ହେବାକୁ ଚାହେଁ । ଏଠାରେ ସବୁ ଦେଶର ପୁରୁଷ, ସ୍ତ୍ରୀ ସକଳ ଧର୍ମ, ରାଜନୀତି ଓ ଜାତୀୟତାର ଊର୍ଦ୍ଧ୍ୱରେ ଶାନ୍ତି ଓ ପ୍ରଗତି ପାଇଁ ଏକତ୍ର ବାସ କରିବାକୁ ସକ୍ଷମ ହେବେ । ମଣିଷ ଜାତିର ଏକତା ହୃଦୟଙ୍ଗମ କରାଇବା ଅରୋଭିଲର ଲକ୍ଷ୍ୟ ।' ଅରୋଭିଲ ସହରର ପରିକଳ୍ପନାକାରିଣୀ ଶ୍ରୀମା'ଙ୍କର ଏହା ହିଁ ବାଣୀ ।

୧୯୬୮ ଫେବୃଆରୀ ୨୮ ତାରିଖରେ ପୃଥିବୀର ସବୁଦେଶର ଜଣେ ଜଣେ ତରୁଣତରୁଣୀ ତାଙ୍କ ଦେଶର ଆଞ୍ଜୁଳାଏ ଲେଖାଏଁ ମାଟି ନିକ୍ଷେପ କରିଥିଲେ କଂକ୍ରିଟ ନିର୍ମିତ ଏକ ବିରାଟ ପଦ୍ମକୋରକ ମଧ୍ୟକୁ । ଏହିପରି ଉତ୍ସବ ମଧ୍ୟରେ ଆରମ୍ଭ ହୋଇଥିଲା ଅରୋଭିଲ ସହର । ସାଂପ୍ରତିକ ସମୟରେ ଏପରି ସହରର ପରିକଳ୍ପନା ନିଶ୍ଚିତ ଭାବରେ ଅନନ୍ୟ ଓ ଅପୂର୍ବ । x x x

୧୯୭୦ ମସିହାରେ ପ୍ରଥମ ଥର ପାଇଁ ମୁଁ ଆସିଥିଲି ଅରୋଭିଲ । ସେତେବେଳେ ସହରର ପରିକଳ୍ପନା ମାତ୍ର ହୋଇଥାଏ, କୌଣସିଠାରେ ଗୃହ କିମ୍ବା ଉଦ୍ୟାନର ଅସ୍ତିତ୍ୱ ପ୍ରାୟ ନ ଥାଏ । ସାଙ୍ଗରେ ଥିବା ଜଣେ ଆଶ୍ରମବାସୀ ଗାଇଡ୍ ତନ୍ମୟଭାବରେ ବର୍ଣ୍ଣନା କରି ଚାଲିଛନ୍ତି ଅରୋଭିଲର ଭବିଷ୍ୟତର ରୂପରେଖ । ମୁଁ ପଚାରିଦେଲି, 'କେତେ ବର୍ଷରେ ସଂପୂର୍ଣ୍ଣ ହେବ ଅରୋଭିଲ ସହର ?'

ଗାଇଡ୍ ବିରକ୍ତିରେ ମୋତେ ଅନାଇଲେ । ରୁକ୍ଷ ତାଙ୍କର ଉତ୍ତର, 'ଆପଣ ମୋ କଥା ମୋଟେ ବୁଝିନାହାନ୍ତି । ଅରୋଭିଲ ଏକ ସହର ନୁହେଁ, ଏହା ଏକ ଆନ୍ଦୋଳନ । ମଣିଷର ଭବିଷ୍ୟତର ପ୍ରତୀକ ।'

ଗାଇଡ୍‌ଙ୍କ ବିଜ୍ଞତା ସମ୍ପର୍କରେ ଅବଶ୍ୟ ମୋର ସନ୍ଦେହ ନଥିଲା । କିନ୍ତୁ ତାଙ୍କର ଅସହନଶୀଳତା ଏବଂ ରୁକ୍ଷତା ପାଇଁ କ୍ଷୁର୍ଣ୍ଣ ହୋଇଥିଲି ।

ପ୍ରାୟ ବାରବର୍ଷ ପରେ ପୁଣି ଥରେ ଅରୋଭିଲ ମାଟିରେ ସେଇ ଗାଇଡ୍‌ଙ୍କ କଥା ମନକୁ ଆସୁଥିଲା । ଏହା ମଧ୍ୟରେ ଅବଶ୍ୟ ଗଢ଼ିଉଠିଛି ଚାରି ପାଞ୍ଚଟି ଚମତ୍କାର ସୌଧ– ମାତୃମନ୍ଦିର, ଭାରତନିବାସ, ଆମ୍ଫିଥିଏଟର, ଆସ୍ପାରେସନ । ଇତସ୍ତତଃ ମୁଣ୍ଡ ଟେକିଥିବା ସୁରୁଚିସଂପର୍ଣ୍ଣ ପର୍ଣ୍ଣକୁଟୀରମାନଙ୍କରେ ରହିଛନ୍ତି ବିଭିନ୍ନ ଜାତୀୟତାର ପୁରୁଷ ଓ ନାରୀ । କୌଣସି ଗୋଟିଏ ସ୍ଥାନରେ ଦଶବାରଟି ଗୋରାଶିଶୁ ଏକତ୍ର ଖେଳୁଥିବାର ଦେଖିଲି । ହଠାତ୍ ଶିଶୁଟିଏ କାନ୍ଦି କାନ୍ଦି ଧାଇଁଲା । ନିକଟସ୍ଥ କୁଡ଼ିଆଘରୁ ବାହାରି ଆସିଲା ତା'ର ମାଆ । ଏକାନ୍ତ ପରିଚିତ ପାରିବାରିକ ଦୃଶ୍ୟଟିଏ ।

ଆୟାପାନ କହୁଥିଲା, ବର୍ତ୍ତମାନ ଅରୋଭିଲିୟାନ୍‌ଙ୍କ ସଂଖ୍ୟା ଚାରିଶହ । ଏମାନେ ନିଜେ ମାଟି ବୋହି ଘର ତିଆରି କରିଛନ୍ତି । ଗୋରାମାନେ ଖୁବ୍ ପରିଶ୍ରମୀ ।

ହାଫ୍ ପ୍ୟାଣ୍ଟ୍, ବ୍ୟାନିୟନ ପିନ୍ଧି ଗୋରା ପୁରୁଷ ଓ ଯୁବତୀମାନେ ସାଇକେଲ ଚଲାଉଥିବାର ଦୃଶ୍ୟ ବାରମ୍ବାର ଆଖିରେ ପଡ଼ିଥିଲା । ସେମାନେ କ୍ଳାନ୍ତ ଓ ମଳିନ

ଦିଶୁଥିଲେ; ଗ୍ରୀଷ୍ମଜଳବାୟୁରେ ସେମାନଙ୍କ ଚମଡ଼ା ଈଷତ୍ କଳା ପଡ଼ିଆସିଥିଲା । ସେମାନେ ହିଁ ଥିଲେ ଅରୋଭିଲ ସହରର ପ୍ରଥମ ନାଗରିକ ।

କିନ୍ତୁ ବାରବର୍ଷ ମଧ୍ୟରେ ଅରୋଭିଲ ସହରର ଆଶାନୁରୂପ ବିକାଶ ହୋଇନାହିଁ ବାହିଁକି ? ମାତ୍ର ଚାରି ପାଞ୍ଚୋଟି ଅସଂପୂର୍ଣ୍ଣ ସୌଧ, କେତୋଟି କୁଡ଼ିଆଘର । ଲକ୍ଷ୍ୟ ଓ ଆଦର୍ଶ ଯେତେବେଳେ ମହତ, ଲକ୍ଷ୍ୟ ସାଧନର ଗତି ନିଶ୍ଚିତ ଭାବରେ ହୋଇପାରିଥାନ୍ତା ଅଧିକ କ୍ଷୀପ୍ର ।

ଆୟାପାନ ପୂର୍ବଥରର ଗାଇଡ୍‌ଙ୍କ ଠାରୁ କମ୍ ଆଦର୍ଶବାଦୀ ଥିଲା । କହିଲା, 'ଅରବିନ୍ଦ ଆଶ୍ରମ ଓ ଅରୋଭିଲ କର୍ତ୍ତୃପକ୍ଷଙ୍କ ମଧ୍ୟରେ ବିବାଦ ଲାଗି ବର୍ତ୍ତମାନ ଅରୋଭିଲ ସହରର କାର୍ଯ୍ୟ ପ୍ରାୟ ବନ୍ଦ ରହିଛି । ତେବେ ସବୁ ମହତକାର୍ଯ୍ୟରେ ବିଘ୍ନ ଆସିଥାଏ ।'

ଆୟାପାନଠାରୁ ପୁଣି ଜାଣିଲି, ବହୁ ୟୁରୋପୀୟ ବର୍ଷେ ଛ'ମାସ ଅରୋଭିଲରେ ରହି ନିଜ ଦେଶକୁ ଫେରିଯାଉଛନ୍ତି । କୌଣସି କାରଣରୁ ଅରୋଭିଲ ନାଗରିକ ହୋଇ ରହିବାକୁ ସେମାନଙ୍କର ଧୈର୍ଯ୍ୟ ରହୁନାହିଁ ।

ପଣ୍ଡିଚେରୀ ଓ ଅରୋଭିଲରେ ବହୁ ଗୋରାବ୍ୟକ୍ତିଙ୍କୁ ଭେଟିବା ସ୍ୱାଭାବିକ । ଏପରିକି ଏକ ସମୟରେ ଗୋଟିଏ ରେସ୍ତୋରାଁରେ କଳାଲୋକଙ୍କ ଅପେକ୍ଷା ଗୋରା ଲୋକଙ୍କ ସଂଖ୍ୟା ଅଧିକ ଥିବା ଲକ୍ଷ୍ୟକଲି । କିନ୍ତୁ ଏହି ଗୋରାମାନେ କ'ଣ ସତରେ ଶ୍ରୀ ଅରବିନ୍ଦ ଓ ଶ୍ରୀମା'ଙ୍କ ଆଦର୍ଶରେ ଅନୁପ୍ରାଣିତ, ନା କେବଳ ତାରୁଣ୍ୟ ଓ ପ୍ରାଚୁର୍ଯ୍ୟର ଅସ୍ଥିରତାରେ ଧାଇଁ ଆସିଛନ୍ତି ଭାରତ ? ଆଜୀବନ ସାଧନାରେ ସେମାନଙ୍କର ବିଶ୍ୱାସ ଅଛି ତ ? ଏହି ଗୋରାମାନଙ୍କୁ ଲକ୍ଷ୍ୟ କଲେ ସେମାନେ ଯେ ପାଶ୍ଚାତ୍ୟ ଜଗତରେ ଯଥାର୍ଥ ବୌଦ୍ଧିକ ଓ ସାଂସ୍କୃତିକ ପ୍ରତିନିଧି, ସେଭଳି ମନେହେଉ ନଥିଲା ।

ଅରୋଭିଲ ସହରର ପରିକଳ୍ପନା ନିଶ୍ଚିତ ଭାବରେ ଅନନ୍ୟ ଓ ଅପୂର୍ବ । କିନ୍ତୁ ଏଇ ପରିକଳ୍ପନାକୁ ରୂପଦେବେ ଯେଉଁମାନେ, ସେମାନଙ୍କ ଆବଶ୍ୟକୀୟ ସହନଶୀଳତା ଓ ଆନ୍ତରିକତା ଅଛି ତ ? ❒

(୧୯୮୩)

# ହୋଟେଲ ଅନ୍ନପୂର୍ଣ୍ଣା ଓ ଲା ରାମିନା

ସକାଳ ଛଅଟା ପୂର୍ବରୁ ହୋଟେଲ ଅନ୍ନପୂର୍ଣ୍ଣ ଗରାଖମାନଙ୍କ ଦ୍ୱାରା ପୂର୍ଣ୍ଣ ହୋଇ ସାରିଥିଲା । କୋଙ୍କଣୀ, ମରାଠୀ, ହିନ୍ଦୀଭାଷୀ ଗରାଖସବୁ । ହୋଟେଲ ମାଲିକ ଆପାତତଃ ଦକ୍ଷିଣ ଭାରତୀୟ । ମାଲିକଙ୍କ ପଛରେ କାନ୍ଥରେ ସଜ୍ଜିତ ଦକ୍ଷିଣଭାରତୀୟ ଠାକୁର ଓ ସିରିଡ଼ିର ସାଇବାବାଙ୍କ ଫଟୋ । ଧୂପକାଠିର ଗନ୍ଧ । କେହିଜଣେ ମନଯୋଗ ସହକାରେ ମରାଠୀ ପତ୍ରିକା 'ରାଷ୍ଟ୍ରଦ୍ୱୀପ' ପଢ଼ିବାରେ ବ୍ୟସ୍ତ । ଗୋଆର ମଡ଼ଗାଓଁର କେନ୍ଦ୍ରସ୍ଥଳରେ ଅବସ୍ଥିତ ହୋଟେଲଟି ।

ଓ ଏଇ ଦକ୍ଷିଣଭାରତୀୟ ହିନ୍ଦୁ ହୋଟେଲଟିର ଅଳ୍ପ ଦୂରରେ ଲା ରାମିନା– ବିଫ୍‌ର ହୋଲ୍‌ସେଲ୍ ଡିଲର । ଅର୍ଥାତ୍ ଗୋରୁମାଂସର ଏକ ପ୍ରଧାନ ବିକ୍ରୟ କେନ୍ଦ୍ର । ପବିତ୍ର ହିନ୍ଦୁ ହୋଟେଲଟି ନିକଟରେ ଗୋରୁମାଂସ ବିକ୍ରୟକେନ୍ଦ୍ର– ଏହା ବୋଧହୁଏ କେବଳ ଗୋଆରେ ହିଁ ସମ୍ଭବ । ଶତାବ୍ଦୀ ଶତାବ୍ଦୀର ବୈଚିତ୍ରମୟ ଇତିହାସ ଗୋଆକୁ କରିଛି ଯଥାର୍ଥରେ ସାର୍ବଜନୀନ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଂସ୍କୃତିର ନିର୍ବିବାଦ ସହାବସ୍ଥାନ ଓ ସମନ୍ୱୟ ଯେଉଁଳି ଘଟିଛି ଗୋଆରେ...ଭାରତର ଅନ୍ୟତ୍ର କୁତ୍ରାପି ଘଟିଛି ବୋଲି ମନେ ହୁଏନାହିଁ ।

**ଅନ୍ୟ ଏକ ଭାରତ–**

ଗୋଆ ଭାରତରେ...କିନ୍ତୁ ଏହାର ସାଂସ୍କୃତିକ ଓ ମାନବିକ ପରିବେଶ ଭାରତର ଅନ୍ୟ ଯେ କୌଣସି ଅଞ୍ଚଳଠାରୁ ପୃଥକ । ବସ୍‌ରେ ଆପଣଙ୍କ ବସିଥିବା କିମ୍ୱା ରେଷ୍ଟୋରାଂରେ ଆପଣଙ୍କ ସହିତ ଚା' ଖାଉଥିବା ଲୋକଟିର ମାତୃଭାଷା ବା ଧର୍ମ ସମ୍ପର୍କରେ ଅନୁମାନ କରିବା ଆପଣଙ୍କ ପକ୍ଷରେ ସମ୍ଭବ ହୋଇ ନପାରେ । ଗୋଆର ଭୌଗୋଳିକ ଅବସ୍ଥିତି ଏପରି ଯେ ଦୁଇଟି ସମୃଦ୍ଧ ରାଜ୍ୟ ମହାରାଷ୍ଟ୍ର ଓ କର୍ଣ୍ଣାଟକ ଏହାର ପ୍ରତିବେଶୀ ଏବଂ ବମ୍ବେ ଏବଂ ବାଙ୍ଗାଲୋର ସହିତ ଏହାର ଯାତାୟତ ସମ୍ପର୍କ ସୁଦୃଢ଼ । ସେଥିପାଇଁ ସ୍ଥାନୀୟ କୋଙ୍କଣୀ ଅଧିବାସୀମାନଙ୍କ ସହିତ ବ୍ୟବସାୟ ବାଣିଜ୍ୟ ଓ ଅନ୍ୟାନ୍ୟ କ୍ଷେତ୍ରରେ ମରାଠୀ ଓ କନ୍ନଡଭାଷୀମାନେ ବହୁ ସଂଖ୍ୟାରେ ମିଶି ରହିଛନ୍ତି ।

ଟ୍ରେନ୍ ଯୋଗେ କର୍ଣ୍ଣାଟକ ଦେଇ ଗୋଆରେ ପ୍ରବେଶକଲେ ପ୍ରଥମ ଷ୍ଟେସନ କ୍ୟାସ୍‌ଲ୍‌ରକ୍ । କ୍ୟାସ୍‌ଲ୍ ରକ୍‌ରେ ଟ୍ରେନ୍ ଅଟକିବା ମାତ୍ରେ ହିଁ ବୁଝିହେଲା... ଆମେ

ଅନ୍ୟ ଏକ ଭାରତରେ ପ୍ରବେଶ କରିସାରିଛୁ । ସାର୍ଟ ଓ ସ୍କର୍ଟ୍‌ପିନ୍ଧା ବବ୍‌ଡ କେଶଧାରିଣୀ କୃଷ୍ଣକାୟ ମହିଳା ଓ ଝିଅ କେତୋଟି ଷ୍ଟେସନ ନିକଟରେ ଠିଆ ହୋଇଥିଲେ । ପାହାଡ଼ିଆ ଲ୍ୟାଣ୍ଡସ୍କେପ୍‌ରେ ଇତଃସ୍ତତଃ ନାଲି ରଙ୍ଗର ଆଜବେଷ୍ଟସ୍ ଘରସବୁ କୌଣସି ୟୁରୋପୀୟ ହିଲଷ୍ଟେସନର ଭ୍ରମ ଜମାଉଥିଲା । ଟ୍ରେନ୍ କମ୍ପାର୍ଟମେଣ୍ଟରେ ପ୍ରଥମ ଥର ପାଇଁ ହକର୍‌ମାନେ କୋଲ୍‌ଡ୍ ଡ୍ରିଙ୍କ ସାଙ୍ଗକୁ ବିଅର ଓ ଫେଣିମଦ ବିକ୍ରୟ କରିବା ପାଇଁ ଚିତ୍କାର ଆରମ୍ଭ କରିଦେଇଥିଲେ ।

ପଞ୍ଚଦଶ ଶତାବ୍ଦୀର ଶେଷ ଭାଗରୁ ଗୋଆ ସହିତ ପର୍ତ୍ତୁଗାଲ୍‌ର ସଂପର୍କ, ଏବଂ ଗୋଆରେ ୟୁରୋପୀୟ ସଂସ୍କୃତି ଓ ଖ୍ରୀଷ୍ଟଧର୍ମର ଅନୁପ୍ରବେଶ । ତାହା ପୂର୍ବରୁ ରାମାୟଣ ଓ ମହାଭାରତ ଯୁଗରୁ ଗୋଆ ବା ଗୋମନ୍ତକ ଥିଲା ଏକ ପ୍ରଧାନ ହିନ୍ଦୁକ୍ଷେତ୍ର । ଚତୁର୍ଦ୍ଦଶ ଓ ପଞ୍ଚଦଶ ଶତାବ୍ଦୀରେ ଏହା ଅନ୍ତର୍ଭୁକ୍ତ ହୋଇଥିଲା ମୁସଲମାନ ସାମ୍ରାଜ୍ୟରେ । ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ...ତିନୋଟି ଧର୍ମ ଓ ସାଂସ୍କୃତିକ ଧାରା ତେଣୁ ସ୍ୱାଭାବିକ ଭାବେ ପ୍ରତିଫଳିତ ଓ ଏକତ୍ରିତ ଗୋଆର ଜୀବନରେ ।

ଗୋଆରେ ଦିନଟିଏ କଟାଇଥିଲି ମୁଲ୍ଲା କଲୋନିରେ ଜଣେ ଓଡ଼ିଆ ବନ୍ଧୁଙ୍କ ଆତିଥ୍ୟରେ । ମୁଲ୍ଲା କଲୋନି ଅବସ୍ଥିତ ଗୋଆର କେନ୍ଦ୍ରସ୍ଥଳ ଫର୍ମାଗୁଡ଼ି ଅଞ୍ଚଳରେ । ମୁଲ୍ଲା କଲୋନିର ଗୃହଗୁଡ଼ିକର ମାଲିକ ଜଣେ ମୁସଲମାନ...ବହୁ ସମୟ ରହନ୍ତି ମଧ୍ୟପ୍ରାଚ୍ୟର ଆବୁଧାବିରେ । କଲୋନିରେ ଭଡ଼ାରେ ରହୁଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ଥିଲେ ଜୋସ୍, ସିରିଆକ୍, ଷ୍ଟିଫେନ୍, ସୋଡ଼ାୱାଲା । ଜୋସ୍ ମୁସଲମାନ, ସିରିଆକ୍ ଓ ଷ୍ଟିଫେନ ଖ୍ରୀଷ୍ଟିଆନ, ସୋଡ଼ାୱାଲା ହିନ୍ଦୁ । ମଧ୍ୟାହ୍ନରେ ଜଣେ କେରଳୀ ଫାଦର(ପାଦ୍ରୀ) କୌଣସି ଧର୍ମ କାର୍ଯ୍ୟରେ କଲୋନିରେ ଇତସ୍ତତଃ ହେଉଥିବା ଦେଖିଲି । ମୁଲ୍ଲାକଲୋନିର ଠିକ୍ ନିକଟରେ ଗୋଟିଏ ମୁସଲମାନ ଗ୍ରାମ । ମୋ ବନ୍ଧୁଙ୍କ ସାନଭାଇ କହିଲା, ସେ ଗୋଆରେ ବେଶ୍ କିଛି ବର୍ଷ କଟାଇଲାଣି । ତା'ର ସବୁଠାରୁ ପ୍ରିୟସାଙ୍ଗ ଜଣେ ମୁସଲମାନ ଯୁବକ । ସେ ଅନେକ ସମୟରେ ସେଇ ମୁସଲମାନ ଯୁବକ ଘରେ ଖିଆପିଆ କରେ । ସେ ଲକ୍ଷ୍ୟ କରିଛି, ମୁସଲମାନ ଗ୍ରାମରେ କୁକୁଡ଼ା ଓ ଛେଳି ମାଂସ ହିଁ ପ୍ରାୟ ଚଳେ । ଗୋରୁମାଂସର ବ୍ୟବହାର କ୍ୱଚିତ୍ ।

ସେଦିନ ରାତ୍ରିରେ ଫର୍ମାଗୁଡ଼ିରେ ବମ୍ବେର କୌଣସି ସାଂସ୍କୃତିକ ଦଳ କବାଲି ପରିବେଷଣ କରିବାର କାର୍ଯ୍ୟକ୍ରମ ଥିଲା । ତେଣୁ ମଧ୍ୟରାତ୍ରି ବେଳକୁ ସେଠାରେ ଜମିସାରିଥିଲା ଗ୍ରାମ୍ୟମେଳାର ବାତାବରଣ । ମୁସଲମାନ ଗ୍ରାମରେ ବେଶ୍ ଉତ୍ସାହ

ଓ ଉତ୍ତେଜନା ଲକ୍ଷ୍ୟ କରିହେଉଥିଲା ସନ୍ଧ୍ୟା ପ୍ରହରରୁ । ମୋ ବନ୍ଧୁଙ୍କ ସାନ ଭାଇଙ୍କର ପ୍ରୋଗ୍ରାମ ଥିଲା...ସେଇ ମୁସଲମାନ ଯୁବକଟି ସଙ୍ଗେ ସାରାରାତି କବାଲି ଉପଭୋଗ କରିବା ।

## ପ୍ରକୃତିର ଚିତ୍ରଶାଳା–

ସାଧାରଣତଃ ସମୁଦ୍ର କୂଳବର୍ତ୍ତୀ କିମ୍ୱା ପାର୍ବତ୍ୟ ଅଞ୍ଚଳଗୁଡ଼ିକ ପ୍ରାକୃତିକ ସୌନ୍ଦର୍ଯ୍ୟ ପାଇଁ ଟୁରିଷ୍ଟମାନଙ୍କ ଆକର୍ଷଣର କାରଣ ହୋଇଥାନ୍ତି । କିନ୍ତୁ ଗୋଆରେ ଉଭୟ ପାର୍ବତ୍ୟ ଓ ସାମୁଦ୍ରିକ ସୌନ୍ଦର୍ଯ୍ୟର ଅପୂର୍ବ ସମନ୍ୱୟ ଘଟିଛି ଓ ସେଇଥିପାଇଁ ଟୁରିଷ୍ଟ୍‌ମାନଙ୍କ ପାଇଁ ଗୋଆର ଆକର୍ଷଣ ଅଦମ୍ୟ ।

ଗୋଆର କ୍ଷେତ୍ରଫଳ ପ୍ରାୟ ସାଢ଼େ ତିନି ହଜାର ବର୍ଗମାଇଲ୍ । ଏଥିରେ କେତେଗୁଡ଼ିଏ ପର୍ବତ, ଉପତ୍ୟକା, ନଦୀ ଓ ଜଳପ୍ରପାତ ଅଛି । ମାଣ୍ଡୋଭା ବା ଗୋମତୀ ଏବଂ ସାଲ ନଦୀ ମୁଖ୍ୟ । ଦୁଧ୍‌ସାଗର ଜଳପ୍ରପାତର ରଙ୍ଗ ଠିକ୍ ଦୁଗ୍ଧ ଭଳି । ସମୁଦ୍ରମଧକୁ ସ୍ଥାନେ ସ୍ଥାନେ ପ୍ରବେଶ କରିଛି ସ୍ଥଳଭାଗ । ସମୁଦ୍ରକୂଳ ତଥା ଉପତ୍ୟକାମାନ ଅସଂଖ୍ୟ ନାରୀକେଳ ବୃକ୍ଷରେ ଆଚ୍ଛାଦିତ ।

## ହିପ୍‌ପୀମାନଙ୍କ ସ୍ୱର୍ଗ–

ଗୋଆର ଅନ୍ୟତମ ବେଳାଭୂମି ବାଘାରେ ବିଚିତ୍ର ଦୃଶ୍ୟଟିଏ ଦେଖିବାକୁ ମିଳେ । ତାହା ହେଉଛି ଅସଂଖ୍ୟ ଶ୍ୱେତାଙ୍ଗ ନରନାରୀଙ୍କ ଉଲଗ୍ନ ଦେହର ପ୍ରଦର୍ଶନୀ । ଓଡ଼ିଶାରେ ଅବଶ୍ୟ ଗୋରା ହିପ୍‌ପୀମାନଙ୍କୁ କେବେ କେବେ ଆମେ ଦେଖିଥାଉ । କିନ୍ତୁ କୌଣସି ଗୋଟିଏ ଅଞ୍ଚଳରେ ଏତେ ସଂଖ୍ୟାରେ ଏତେ ସ୍ୱଚ୍ଛନ୍ଦରେ ପ୍ରକୃତିର ସୌନ୍ଦର୍ଯ୍ୟ ଓ ଆପଣାର ନଗ୍ନତାକୁ ଉପଭୋଗ କରୁଥିବା ଦଳ ଦଳ ହିପ୍‌ପୀ ବୋଧହୁଏ ଭାରତରେ କିମ୍ୱା ପୃଥିବୀରେ ଅନ୍ୟତ୍ର ଦୃଷ୍ଟି ଗୋଚର ହୁଅନ୍ତି ନାହିଁ । ଯୁବତୀମାନେ କେବଳ ସାମାନ୍ୟ କୌପିନ ପିନ୍ଧି–ଏପରିକି ସଂପୂର୍ଣ୍ଣ ଉଲଗ୍ନ ଭାବରେ ସମୁଦ୍ରବାଲିରେ ଶୋଇରହି ସୂର୍ଯ୍ୟସ୍ନାନ କରୁଥାନ୍ତି । ସେମାନଙ୍କ ଗତିବିଧି ସଂପୂର୍ଣ୍ଣ ନିର୍ବିକାର; ଚତୁର୍ଦ୍ଦିଗରେ ସେମାନଙ୍କୁ ଲକ୍ଷ୍ୟ କରୁଥିବା ଭାରତୀୟ ଚକ୍ଷୁମାନଙ୍କ ପ୍ରତି ସେମାନେ ସଂପୂର୍ଣ୍ଣ ଅନାଗ୍ରହୀ । କୌଣସି ସ୍ଥାନରେ ଜଣେ ଯୁବତୀର ଉଲଗ୍ନ ପୃଷ୍ଠ ଓ ଗ୍ରୀବାକୁ ଜଣେ ଦାଢ଼ୀବନ୍ତ ଯୁବକ ଶ୍ୱାନ ପରି ଆଘ୍ରାଣ କରିଚାଲିଥିବାର ଦୃଶ୍ୟଟିଏ ଆଖିରେ ପଡ଼ିଲା ।

ବାଘା ବେଳାଭୂମିରେ ଏଇ ହିପ୍‌ପୀମାନଙ୍କ ପାଇଁ ଅସଂଖ୍ୟ କୁଡ଼ିଆଘର; ଚା, କଫି, କୋଲଡ୍ ଡ୍ରିଙ୍କ୍, ମଦ୍ୟ ଏବଂ ଶସ୍ତା ପରିଧେୟର ଦୋକାନ । ଶୁଣିଲି, ଏଇ ହିପ୍‌ପୀମାନଙ୍କ ମଧ୍ୟରୁ ଅଧିକାଂଶ ଆସିଛନ୍ତି ସୁଇଜରଲାଣ୍ଡ୍‌ରୁ । ଚାକିରୀ କାଳରେ କିଛି ଅର୍ଥ ସଞ୍ଚୟ କରି ସେମାନେ ଚାଲିଆସନ୍ତି ଭାରତ, ଅନ୍ତତଃ କିଛି ମାସ ହିପ୍‌ପୀର ଜୀବନଯାପନ କରିବା ପାଇଁ । ପୁଣି ଶୁଣିଲି, ଶ୍ରୀଯୁକ୍ତ ଲତିଫ୍ ଗୋଆର ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ଥିବା ସମୟରେ ହିପ୍‌ପୀମାନଙ୍କର ଏଭଳି ଚାଲିଚଳନକୁ ବେଆଇନ କରିବାକୁ ଉଦ୍ୟମ କରିଥିଲେ । ମାତ୍ର ତାଙ୍କ ଉଦ୍ୟମ ସଫଳ ହେଲାନାହିଁ । ବିଦେଶୀମାନଙ୍କ ଆଗମନ ଅର୍ଥ ବିଦେଶୀ ମୁଦ୍ରା ଉପାର୍ଜନ– ଏଇ ଉପାର୍ଜନ କୁଆଡ଼େ ଶ୍ରୀଯୁକ୍ତ ଲତିଫ୍‌ଙ୍କର ପ୍ରତିବନ୍ଧକ ହେଲା ।

**ପାଉଲ୍‌କରଙ୍କ ଦୌରାତ୍ମ୍ୟ–**

ଟ୍ରେନ୍ ମଡ଼ଗାଓଁରେ ପହଞ୍ଚିବାକୁ ଅଧଘଣ୍ଟାଏ ଡେରିଥାଏ, ପତଳା ସାବନା ଲୋକଟିଏ ମୋ ପାଖରେ ଆସି ନିଜର ପରିଚୟ ଦେଲା, 'ମୁଁ ପାଉଲ୍‌କର, ଅମୁକ ଟ୍ରଭଲ୍‌ସର ପ୍ରତିନିଧି । ଆପଣ ଆମ ଉପରେ ସବୁକିଛି ଛାଡ଼ିଦେଇ ନିଶ୍ଚିତ ରହନ୍ତୁ । ଆପଣଙ୍କ ଆର୍ଥିକ ଶକ୍ତି ଅନୁଯାୟୀ ହୋଟେଲ, ବିଭିନ୍ନ ସ୍ଥାନ ପରିଦର୍ଶନ କରିବା ପାଇଁ ଟ୍ୟାକ୍‌ସି ବା ମାଟାଡ଼ୋର୍ ସବୁର ଦାୟିତ୍ୱ ଆମର । କ'ଣ ପିଇବେ କହନ୍ତୁ – ଫେଣି, ବିଅର, କଫି.... । ଦେଖନ୍ତୁ, କିଛି ମନେ କରିବେ ନାହିଁ, ଆପଣ ତ ଗୋଆ ଆସିଛନ୍ତି– ଆମର ଅତିଥି । ସିଗାରେଟ୍ ପିଅନ୍ତି ?'

ଗୋଆର ପ୍ରଧାନ ବ୍ୟବସାୟ ଟୁରିଜ୍‌ମ୍ । ବିଶେଷତଃ ବମ୍ବେର ଧନୀକ ଶ୍ରେଣୀର ଜଳବାୟୁ ପରିବର୍ତ୍ତନର ପ୍ରଧାନ ଆକର୍ଷଣ ଗୋଆ । ରେଲ୍, ବସ୍, କାର୍, ବ୍ୟୋମଯାନ, ଜାହାଜ...ସବୁଥିରେ ବମ୍ବେରୁ ଗୋଆକୁ ଯାତାୟତ ସ୍ୱଚ୍ଛନ୍ଦ । ଗୋଆରେ ସବୁବେଳେ ଟୁରିଷ୍ଟ୍‌ମାନଙ୍କ ଭିଡ଼ । ତେଣୁ ହୋଟେଲ ଓ ଟ୍ରାଭଲ୍‌ସ୍ ଅନୁଷ୍ଠାନମାନଙ୍କ ସଂଖ୍ୟା ପ୍ରଚୁର ଏବଂ ପାଉଲ୍‌କରଙ୍କ ଭଳି ବ୍ୟକ୍ତିମାନେ ଟୁରିଷ୍ଟ୍‌ମାନଙ୍କୁ ଘେରିଯା'ନ୍ତି ସେମାନେ ଗୋଆରେ ପ୍ରବେଶ କରିବା ମୁହୂର୍ତ୍ତରୁ । ପୂର୍ବରୁ ଗୋଆ ଯାଇଥିବା ବନ୍ଧୁମାନଙ୍କଠାରୁ ମୁଁ ଗୋଟିଏ ଦୁଇଟି ହୋଟେଲର ଠିକଣା ଟିପି ନେଇଥାଏ । ପାଉଲ୍‌କରଙ୍କ ଅତ୍ୟଧିକ ଉତ୍ସାହ ଏବଂ ତାଙ୍କ ମୁଖରୁ ବାହାରୁଥିବା ଉତ୍କଟ ଫେଣି ଗନ୍ଧ ତାଙ୍କପ୍ରତି ମୋ ମନରେ ସନ୍ଦେହ ସୃଷ୍ଟି କଲା । ଅନ୍ୟ ଗୋଟିଏ ହୋଟେଲରେ ରହିବା ପାଇଁ ସ୍ଥିର କରିସାରିଛି କହି, ତାଙ୍କଠାରୁ ବିଦାୟ ନେଲି ।

ସେ ମାଡ଼ଗାଓଁ ଷ୍ଟେସନ ପ୍ଲାଟଫର୍ମରେ ଠିଆହୋଇ ରହିଲେ... କିପରି ବିମର୍ଷ ଓ ରୁକ୍ଷ ଦେଖାଯାଉଥାଏ ତାଙ୍କର ଚେହେରା ।

**ନଡ଼ିଆ ଗୋଟାକୁ ଚାରଣା–**

'ପର୍ତ୍ତୁଗୀଜ୍‌ମାନଙ୍କ ଅମଳରେ ନଡ଼ିଆ ଗୋଟାକର ଦାମ୍ ଥିଲା ଚାରଣା । ଆଜି ଦେଖନ୍ତୁ ଦୁଇଟଙ୍କା । ସ୍ୱାଧୀନ ହେଲାପରେ ଗୋଆର ସ୍ଥାନୀୟ ଲୋକେ ଦରିଦ୍ର ହୋଇଗଲେ ।' ଏହା ଥିଲା ଯାଦବର ଉକ୍ତି । ଯାଦବର ଘର ମହାରାଷ୍ଟ୍ରର ବେଲଗାଓଁ; ଗୋଆରେ କୌଣସି ଟ୍ରାଭେଲ ଉଇଙ୍ଗ୍‌ସ୍‌ରେ ଡ୍ରାଇଭର୍ । ଆମକୁ ମାଟାଡ଼ୋର୍‌ରେ ଗୋଆ ବୁଲାଇଥିଲା ।

କେବଳ ଯାଦବ ନୁହେଁ, ଗୋଆର ବହୁ ସ୍ଥାନୀୟ ଲୋକଙ୍କର ପର୍ତ୍ତୁଗୀଜ୍ ଶାସନ ପ୍ରତି କେତେକାଂଶରେ ଭାବପ୍ରବଣତା ଅଦ୍ୟାପି ବିଦ୍ୟମାନ । ଗୋଆ ଭାରତରୁ ବିଛିନ୍ନ ଥିବା ସମୟରେ ଏହାର ଅର୍ଥନୀତିର ସ୍ୱରୂପ ଥିଲା ଭିନ୍ନ । ସ୍ୱାଧୀନତା ପରେ ଗୋଆକୁ ଛୁଟିଲା ଅଣଗୋଆନ୍‌ମାନଙ୍କ ସ୍ରୋତ । ବ୍ୟବସାୟ ବାଣିଜ୍ୟରେ ଗୋଆ ଅବିଳମ୍ବେ ପାଲଟିଗଲା ବୃହତ୍ତର ଅଞ୍ଚଳର କ୍ଷୁଦ୍ର ଅଂଶଟିଏ । ବମ୍ବେ ବା ବାଙ୍ଗାଲୋରରେ ତେଣୁ ଗୋଆର ନଡ଼ିଆ ବିକ୍ରୀ ହେଲା ଗୋଟା ଦୁଇଟଙ୍କାରେ । ଗୋଆରେ ଆଉ ଚାରଣାରେ ନଡ଼ିଆ ମିଳିବ କେଉଁଠୁ ?

ଗୋଆ ଉଭୟ ଖଣିଜ ଓ କୃଷି ସମ୍ପଦ ଦୃଷ୍ଟିରୁ ସମୃଦ୍ଧ । ଲୁହା, ମାଙ୍ଗାନିଜ, ବକ୍‌ସାଇଟ୍ ସାଙ୍ଗକୁ ଧାନ, ନଡ଼ିଆ, ଲଙ୍କାଆମ୍ବ ଗୋଆର ଅର୍ଥନୀତିକୁ କରିଛି ସ୍ୱଚ୍ଛଳ ଓ ସମତୁଳ । ସ୍ୱାଧୀନତା ପରେ ଗୋଆରେ ଗଢ଼ି ଉଠିଛି, ଲୁହା, ମାଙ୍ଗାନିଜ, ସାରକାରଖାନା । ମର୍‌ମାଗାଓଁ ପୋତାଶ୍ରୟର ବିକାଶ ଘଟିଛି । ଏହି ପୋତାଶ୍ରୟରୁ ରପ୍ତାନୀ ହୁଏ ଖଣିଜଦ୍ରବ୍ୟ ସାଙ୍ଗକୁ ପ୍ରଚୁର ଲଙ୍କାଆମ୍ବ ମଞ୍ଜି । ଲଙ୍କାଆମ୍ବରୁ ପ୍ରସ୍ତୁତ ଫେଣିମଦ୍ୟ ଗୋଆର ଜାତୀୟ ପାନୀୟ ।

ଅକ୍ଳେଶରେ ବୁଝିହୁଏ ଗୋଆରେ ଜୀବନଧାରଣର ମାନ ଉନ୍ନତ । ସମଗ୍ର ଗୋଆ ଆକାରରେ ପୁରୀଜିଲ୍ଲାଠାରୁ ବୃହତ୍ତର ନୁହେଁ, କିନ୍ତୁ ଏଥିରେ ପାନାଜୀ, ମଡଗାଓଁ, ଭାସ୍କୋଡ଼ାଗାମା (ନୂତନନାମ ସମ୍ଭାଜୀ ପ୍ରାୟ ଚଳେନାହିଁ) ଭଳି ନଗରମାନ ଅବସ୍ଥିତ । ଅସଂଖ୍ୟ ହୋଟେଲ ଓ ଯାନବାହାନ । ବମ୍ବେ ବା କଲିକତା ଭଳି ଜୀବନର ଗତି ଦ୍ରୁତ ।

## ଭିଲ୍ଲା ରୋଡ୍ରେରିଗ୍ ଓ ମାଙ୍ଗେଶ୍ ମନ୍ଦିର–

ଅସମତଳ ଗୋଆର ଲ୍ୟାଣ୍ଡସ୍କେପ୍‌ରେ ଇତସ୍ତତଃ ବାଙ୍ଗ୍‌ଲୋ ଟାଇପ୍ ଗୃହଗୁଡ଼ିକ କୌଣସି ଇଉରୋପୀୟ ହିଲ୍‌ଷ୍ଟେସନ୍‌କୁ ସ୍ମରଣ କରାଇଦିଏ । ପ୍ରାଚୀନ ଗୃହଗୁଡ଼ିକ ପର୍ତ୍ତୁଗୀଜ୍ ରୀତିରେ ନିର୍ମିତ–ନାଲିରଙ୍ଗର ଟାଇଲ ଛାତ, ଧୂଆଁ ନିର୍ଗତ ହେବାପାଇଁ ଚିମ୍‌ନି । ଗୃହଗୁଡ଼ିକ ମଧ୍ୟଯୁଗୀୟ-ଗୋଆର ଅତୀତ ଇତିହାସର ସ୍ମାରକୀ ।

ଗୃହସମ୍ମୁଖରେ ନଡ଼ିଆ, ଗୁଆ ବା କୌଣସି ଡେକୋରେଟିଭ୍ ଗୁଳ୍ମ, କଦବା ପଞ୍ଜୁରୀରେ ଗୋଟିଏ ଦୁଇଟି ଶୁଆ; ଅନେକଙ୍କ ଗୃହ ଉଦ୍ୟାନରେ ସିମେଣ୍ଟ ନିର୍ମିତ କ୍ରଶ୍ ଚିହ୍ନ, ଗୃହମାଲିକଙ୍କ ଧର୍ମବିଶ୍ୱାସର ନିଶ୍ଚିତ ପରିଚୟ । ଅଧିକାଂଶ ଗୃହର ନାମକରଣ ପର୍ତ୍ତୁଗୀଜ୍ ଭାଷାରେ–ଯେପରି ଭିଲ୍ଲା ରୋଡ୍ରେରିଗ୍ ।

ଗୋଆରେ ଟୁରିଷ୍ଟ୍‌ମାନଙ୍କୁ ଦେଖାଇ ଦିଆହୁଏ ଅନେକଗୁଡ଼ିଏ ମନ୍ଦିର ଓ ଗୀର୍ଜା । ରାମନାଥ, ଲକ୍ଷ୍ମୀନାରାୟଣ, ଶାନ୍ତେରୀ, କାମାକ୍ଷୀ, କାଳଭୈରବ, ଗୋପାଳ, ଗଣେଶଙ୍କ ମନ୍ଦିର । ମନ୍ଦିରଗୁଡ଼ିକ ପ୍ରାୟତଃ ନୂତନ ଓ ସୁପରିକଳ୍ପିତ । ଏବଂ ମଜାର କଥା, ଏଇ ମନ୍ଦିରଗୁଡ଼ିକର ନିର୍ମାଣରୀତିରେ ଗୋଆର ଗୀର୍ଜାମାନଙ୍କର ପ୍ରଭାବ ସୁସ୍ପଷ୍ଟ । ବସ୍ତୁତଃ ମନ୍ଦିରଗୁଡ଼ିକ ଅନେକଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ଗୀର୍ଜାର ସମାବେଶ ଭଳି ହିଁ ଦିଶନ୍ତି ।

## ସେଣ୍ଟ୍ ଫ୍ରାନ୍‌ସିସ୍ ଜେଭିୟର–

ସେଣ୍ଟ୍ ଫ୍ରାନ୍‌ସିସ୍ ଜେଭିୟର୍‌ଙ୍କ ଗୀର୍ଜା ଗୋଆର ପ୍ରଧାନ ଦର୍ଶନୀୟ ସ୍ଥାନ ବୋଲି କୁହାଯାଏ । ଷୋଡ଼ଶ ଶତାବ୍ଦୀର ଜେସୁଇଟ୍ ସେଣ୍ଟ୍ ଫ୍ରାନ୍‌ସିସ୍ ପ୍ରାଚୀନ ଗୋଆରେ ସ୍ଥାନଟିଏ ନିର୍ବାଚନ କରିଥିଲେ ଗୀର୍ଜା ନିର୍ମାଣଲାଗି । ସେହିଠାରେ ପରବର୍ତ୍ତୀ କାଳରେ ପର୍ତ୍ତୁଗୀଜ୍ ଶାସନ ପୃଷ୍ଟପୋଷକତାରେ ନିର୍ମିତ ହୋଇଛି ପ୍ରକାଣ୍ଡ ଗୀର୍ଜାଟି ।

ଗୀର୍ଜାଟିର ଅଭ୍ୟନ୍ତର ଅତୀତର ଗାମ୍ଭୀର୍ଯ୍ୟ ଓ ଧାର୍ମିକ ମହାନତାର ସୂଚନା ଦିଏ । ଇଉରୋପର ବିଶାଳ ଗୀର୍ଜାମାନଙ୍କ ସହିତ ଅକ୍ଲେଶରେ ଏହା ତୁଳନୀୟ । ଅଭ୍ୟନ୍ତରରେ ସେଣ୍ଟ୍ ଜେଭିୟର୍‌ଙ୍କ ଜୀବନର ବିଭିନ୍ନ ଘଟଣା ଚିତ୍ରିତ । ଗୀର୍ଜାଟିର ନିର୍ମାଣରୀତି ଗୋଥିକ୍ ।

ଗୀର୍ଜାର ସବୁଠାରୁ ଉଲ୍ଲେଖଯୋଗ୍ୟ ବିଶେଷତ୍ୱ ହେଉଛି ଏଥିରେ ସଂରକ୍ଷିତ ସେଣ୍ଟ୍ ଫ୍ରାନ୍‌ସିସ୍ ଜେଭିୟର୍‌ଙ୍କ ମୃତଦେହ । ରୂପାର କଫିନ୍‌ରେ ଏହି ମୃତଦେହଟି ଚାରିଶହ ବର୍ଷ ହେଲା ସଂରକ୍ଷିତ ଅଛି । ଏବଂ ବର୍ଷର ନିର୍ଦ୍ଦିଷ୍ଟ ଦିନରେ ଭକ୍ତମାନେ ଏହାର ଦର୍ଶନଲାଭ କରନ୍ତି ।

ଭାରତର ଅନ୍ୟ ସମସ୍ତ ଅଞ୍ଚଳ ଭଳି ଗୋଆର ମୂଳଧର୍ମ ଥିଲା ହିନ୍ଦୁ । ପର୍ତ୍ତୁଗୀଜ ଉପନିବେଶ ସ୍ଥାପିତ ହେବା ପରେ ଗୋଆର ଅଧିବାସୀଙ୍କୁ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ କରିବାର ପ୍ରଚେଷ୍ଟା ଆରମ୍ଭ ହେଲା । ଗୋଆରେ ଖ୍ରୀଷ୍ଟଧର୍ମର ଇତିହାସ ବସ୍ତୁତଃ ଧାର୍ମିକ ଅସହିଷ୍ଣୁତାର ଇତିହାସ । ୧୫୬୬ରେ ସେଣ୍ଟ୍ ଜେଭିୟର ଗୋଆରେ ପ୍ରବେଶ କଲେ ଓ ପର୍ତ୍ତୁଗାଲ ଶାସକଙ୍କ ସମର୍ଥନରେ ଗୋଆ ଅଧିବାସୀମାନଙ୍କୁ ଯେକୌଣସି ଉପାୟରେ ଖ୍ରୀଷ୍ଟଧର୍ମରେ ଧର୍ମାନ୍ତରିତ କରିବାରେ ଲାଗିଲେ । ସେ ହୃଦୟଙ୍ଗମ କରିଥିଲେ ଯେ ଶାସକଙ୍କ ହସ୍ତକ୍ଷେପ ବ୍ୟତିରେକ ଭାରତରେ ଖ୍ରୀଷ୍ଟଧର୍ମର ପ୍ରତିଷ୍ଠା ସମ୍ଭବ ନୁହେଁ । ସେଇଥିପାଇଁ ଗୋଆର ସମସ୍ତ ହିନ୍ଦୁମନ୍ଦିର ଧ୍ୱଂସ କରିବାକୁ ସେ ତତ୍କାଳୀନ ପର୍ତ୍ତୁଗୀଜ ଶାସକମାନଙ୍କୁ ପରାମର୍ଶ ଦେଇଥିଲେ ।

ଆନନ୍ଦର କଥା, ଗୋଆରେ ଧର୍ମଗତ ଅସହିଷ୍ଣୁତାର ଇତିହାସ ଆଜି ପ୍ରାୟତଃ ବିସ୍ମୃତ । କିନ୍ତୁ ଖ୍ରୀଷ୍ଟିଆନ୍ ଗୋଆନ୍ ଓ ହିନ୍ଦୁ ଗୋଆନ୍‌ମାନଙ୍କ ପୋଷାକପରିଚ୍ଛେଦ, ରୀତିନୀତିରେ ପାର୍ଥକ୍ୟ ଯଥେଷ୍ଟ । ଏପରିକି ସେମାନଙ୍କ ରାଜନୀତିକ ଆଭିମୁଖ୍ୟ ମଧ ଭିନ୍ନ । ଖ୍ରୀଷ୍ଟିଆନ୍ ଗୋଆନ୍‌ମାନେ ଗୋଆନ୍ ହୋଇ ରହିବାକୁ ଚାହାନ୍ତି, କିନ୍ତୁ ହିନ୍ଦୁ ଗୋଆନ୍‌ମାନେ ମହାରାଷ୍ଟ୍ରରେ ମିଶିବାକୁ ଆଗ୍ରହୀ ।

**କସ୍ତୁରୀ ଭଟ୍ଟାଚାର୍ଯ୍ୟଙ୍କ ଗୋଆ–**

କସ୍ତୁରୀ ଭଟ୍ଟାଚାର୍ଯ୍ୟ ଗୋଆକୁ ଭଲ ପାଆନ୍ତି । ତାଙ୍କ ଘର କଲିକତାରେ, ସେ ବାରବର୍ଷ ହେଲା ଗୋଆରେ ଅଛନ୍ତି । ସ୍ଥାନୀୟ କୌଣସି ସ୍କୁଲରେ ଶିକ୍ଷୟିତ୍ରୀ । ସୁନ୍ଦରୀ, ଅବିବାହିତା । ବାପା ଆର୍ମି ଅଫିସର୍ ଥିଲେ; ଅବସର ପରେ କାମ କରନ୍ତି ଗୋଆରେ କୌଣସି ପ୍ରାଇଭେଟ୍ କମ୍ପାନୀରେ ।

ସେ କହିଲେ, କଲିକତା ତାଙ୍କର ଖୁବ୍ ମନେପଡ଼େ । କିନ୍ତୁ ଗୋଆରେ ତାଙ୍କର ଅସୁବିଧା ନାହିଁ । ଏଠାରେ ଆଞ୍ଚଳିକ ମନୋଭାବ ପ୍ରାୟ ନାହିଁ । ଲୋକେ ମଦ୍ୟ ପିଅନ୍ତି ଯଥେଷ୍ଟ, କିନ୍ତୁ ସ୍ତ୍ରୀମାନଙ୍କୁ ଅସମ୍ମାନ କରନ୍ତି ନାହିଁ ।

### ଦୋନା ପାଉଲାରେ ମାଛ ଶୀକାର–

ଦୋନା ପାଉଲା ବେଳାଭୂମିରେ ସମୁଦ୍ର ମଧ୍ୟକୁ ପ୍ରବେଶ କରିଛି ସ୍ଥଳଭାଗ । ତେଣୁ ସେହି ସ୍ଥଳଭାଗଟି ସଂଧ୍ୟାରେ ଜନାକୀର୍ଣ୍ଣ ହୋଇପଡ଼େ । ତିନି ପାର୍ଶ୍ୱରେ ଆରବସାଗରର ଗଭୀର ସୁନୀଳ ଜଳରାଶି– ଆକାଶରେ ଅସ୍ତଗାମୀ ସୂର୍ଯ୍ୟ । ଦୋନା ପାଉଲାରେ ସାନ୍ଧ୍ୟକାଳୀନ ଅନୁଭୂତି ଅବିସ୍ମରଣୀୟ ।

ବିଚିତ୍ର ଦୃଶ୍ୟଟିଏ ଆଖିରେ ପଡ଼ିଲା । ଟ୍ରାଉଜର ପ୍ୟାଣ୍ଟପରିହିତ କେତେଜଣ ସ୍ଥାନୀୟ ଲୋକ ସମୁଦ୍ରରେ କଳବନ୍‌ଶୀ ପକାଇଥିଲେ । ଲମ୍ୱା ସୂତାମାନ ଲମ୍ୱି ଯାଇଥିଲା ସମୁଦ୍ର ମଧ୍ୟକୁ । ହଠାତ୍ ଜଣକ ସୂତାରେ ଶିକାର ପଡ଼ିଲା । ତା ଇଙ୍ଗିତରେ ତୁରନ୍ତ ସମୁଦ୍ର ଭିତରକୁ ଲମ୍ଫ ଦେଲା ତା'ର ଜଣେ ବଳିଷ୍ଠ କୃଷ୍ଣକାୟ ବନ୍ଧୁ । ଗଭୀର ଜଳରେ ବୁଡ଼ି କିଛି ସମୟ ପରେ ସେ କୂଳକୁ ଆସିଲା । କୂଳରେ ଫିଙ୍ଗିଦେଲା ଏକ ପ୍ରକାଣ୍ଡ ମାଛ । ମାଛଟି ଛଟପଟ ହେଉଥାଏ । ଦୃଶ୍ୟଟି ଉପଭୋଗ କରୁଥାନ୍ତି ଦୋନା ପାଉଲାରେ ସମବେତ ଅସଂଖ୍ୟ ନରନାରୀ ।

### ଅସୀତ୍ ସରୋଦ୍‌କର–

ଗୋଆରେ ପହଞ୍ଚିବାର ଦ୍ୱିତୀୟ ଦିନ ଘଟିଲା ଶୋକାବହ ଘଟଣାଟି । ଦର୍ଶନୀୟ ସ୍ଥାନସବୁ ବୁଲାଇ ଦେଉଥାଏ ଯାଦବ । ବେଶ୍ ମେଳାପୀ ଖୁସୀ ମିଜାଜ୍‌ର ଲୋକ । ଟେପ୍‌ରେ ବଜାଉଥାଏ ପୁରୁଣା ହିନ୍ଦୀ ସିନେମା ଗୀତସବୁ । ମନ୍ଦିର, ଗୀର୍ଜା, ବେଳାଭୂମି ସବୁ ବୁଲିସାରି ସନ୍ଧ୍ୟାରେ କ୍ଳାନ୍ତ ହୋଇ ଫେରୁଥାଉ ହୋଟେଲ ଅର୍ଣ୍ଣପୂର୍ଣ୍ଣା– ସେହିଠାରେ ରହୁଥାଉ ମୁଁ, ମୋର ଦୁଇଟି ପୁଅ ଓ ମୋର କେତେଜଣ ଛାତ୍ର-ଛାତ୍ରୀ । ବନସ୍ତରୀରେ ଦୁର୍ଘଟଣାଟି ଘଟିଲା । ଯାଦବର ମାଟାଡ଼ୋର ଜଣେ ସାଇକେଲ ଆରୋହୀ ଉପରେ ମାଡ଼ିଗଲା । ଯାଦବ ନିକଟରେ ଆଗ ସିଟ୍‌ରେ ବସିଥିଲି ମୁଁ, ମୋ ଦେହସାରା କାଚଗୁଣ୍ଡ । ଯାଦବ କ୍ଷଣକେ ମାଟାଡ଼ୋର୍ ଛାଡି କୁଆଡ଼େ ଧାଇଁ ପଳେଇଲା । ପରବର୍ତ୍ତୀ ପରିସ୍ଥିତି ଅନୁମେୟ । ଆମକୁ ଘେରିଗଲେ ସ୍ଥାନୀୟ ଅସଂଖ୍ୟ ଲୋକ । କୋଳାହଳ ଓ ଉତ୍ତେଜନା । ରକ୍ତାକ୍ତ ଲୋକଟିକୁ ନେଇ ମୁଁ ଓ ଦୁଇଜଣ ସ୍ଥାନୀୟ-ଲୋକ ଗଲୁ ପାନାଜୀ ହସ୍‌ପିଟାଲ୍– ସେଠାରୁ ପ୍ରାୟ ପଚିଶି କିଲୋମିଟର ଦୂର । ଲୋକଟି ବିକଳ ଚିତ୍କାର କରୁଥାଏ ବାଟସାରା । ତାକୁ ହସ୍‌ପିଟାଲରେ ଭର୍ତ୍ତିକରି ଫେରିଲି ହୋଟେଲ । ଆଶ୍ୱସ୍ତ ହେଲି, ମୋର ଦୁଇଟି

ପୁଅ ଓ ଛାତ୍ରଛାତ୍ରୀମାନେ ସେତେବେଳକୁ ହୋଟେଲ ଫେରି ସାରିଥାନ୍ତି । ସ୍ଥାନୀୟ ଉତ୍ତ୍ୟକ୍ତଲୋକେ ସେମାନଙ୍କର କିଛି କ୍ଷତି କରି ନଥାନ୍ତି ।

ଅସୀତ୍ ସରୋଦ୍‌କରର ବୟସ ହୋଇଥିଲା ଚାଳିଶି; କାମ କରୁଥିଲା ସ୍ଥାନୀୟ କୌଣସି ଯୋତା କାରଖାନାରେ । ଘରେ ବୁଢ଼ାବାପା, ସ୍ତ୍ରୀ ଓ ଝିଅ । ପରଦିନ ସକାଳେ ତା ମୃତ୍ୟୁ ସମ୍ବାଦ ପାଇଥିଲି ।

ମାର୍ମାଗୁଡ଼ିର ଗୋଟିଏ ଉଦ୍ୟାନରେ ଦିନେ ସନ୍ଧ୍ୟାରେ ପଢ଼ିଥିଲି ସାଇନ୍‌ବୋର୍ଡଟିଏ– ସେଥିରେ ଲେଖାଥିଲା, ୧୯୮୧ରେ ଗୋଆରେ ମୋଟ୍‌ରେ ପନ୍ଦର ଶହ ଅର୍ଥାତ୍ ଦିନକୁ ହାରାହାରି ଚାରୋଟି ଦୁର୍ଘଟଣା ଘଟିଥିଲା । ମୋର ଚାରିଦିନ ରହଣୀରେ ମୁଁ ନିଜେ ତିନୋଟି ଦୁର୍ଘଟଣା ପ୍ରତ୍ୟକ୍ଷ କରିଥିଲି ଓ ଗୋଟିଏ ଦୁର୍ଘଟଣାରେ ମୁଁ ନିଜେ ଥିଲି ଅନ୍ୟତମ ମୁଖ୍ୟନାୟକ । ଅସୀତ୍ ସରୋଦ୍‌କରକୁ ମାତ୍ର କେତେଘଣ୍ଟା ପାଇଁ ଜାଣିଥିଲି । ମାତ୍ର ତାର ସ୍ମୃତି ମୋତେ ସାରା ଜୀବନ ଆଚ୍ଛନ୍ନ କରିରଖିବ । ଏଇ ଲେଖାଟି ତା'ରି ନାମରେ ଉତ୍ସର୍ଗ କରୁଛି । ❐

(୧୯୮୩)

# ଯାତ୍ରା ଡାଏରୀ : ଦିଲ୍ଲୀ

## ଦିଲ୍ଲୀକା ଲଡୁ

'ଦିଲ୍ଲୀକା ଲଡୁ ଯୋ ଖାୟା, ଓହ ପସ୍‌ତାୟା'– ଏହି ପ୍ରବାଦଟି ସହିତ ଆମେ ବହୁ ଦିନୁ ପରିଚିତ । କିନ୍ତୁ ପ୍ରବାଦଟି ଆଦୌ ଠିକ୍ ନୁହେଁ । ଦିଲ୍ଲୀକା ଲଡୁ ଖାଇ ଆଦୌ ପସ୍‌ତାଉ ନଥିବା କେତେକ ବନ୍ଧୁଙ୍କୁ ଗତ ଦିଲ୍ଲୀ ରହଣି କାଳରେ ଆମେ ପ୍ରତ୍ୟକ୍ଷ କରିଆସିଲୁ ।

ବନ୍ଧୁ ରଜନୀବାବୁ ଦିଲ୍ଲୀରେ ରହି ଆସିଛନ୍ତି ପନ୍ଦରବର୍ଷ ହେଲା । ଦୁଇ ବଖୁରିଆ ଭଡ଼ାଘରେ ରହନ୍ତି । ସନ୍ତାନଙ୍କ ସଂଖ୍ୟା ପାଞ୍ଚ । ବାସଗୃହରୁ ବସ୍ ଯୋଗେ ଅଫିସ୍ ଏକ ଘଣ୍ଟାର ବାଟ । ସେଥିରେ ପୁଣି ତାଙ୍କ ନିଜ ଭାଷାରେ–ପନ୍ଦର ଷୋହଳ ତାରିଖ ବେଳକୁ ଦରମା ଶେଷ ।

ତଥାପି ସେ ଦିଲ୍ଲୀ ଛାଡ଼ିବାକୁ ନାରାଜ । ସେ କହନ୍ତି, 'ଆମେରିକାରେ ମୋତେ ଚାକିରୀ ଖଣ୍ଡେ ଯଚା ଯାଇଥିଲା । କିନ୍ତୁ ଧେତ୍ ! ନ୍ୟୁୟର୍କରେ ସ୍କାଇସ୍କ୍ରେପର-ସବୁ ଦେଖି ମୁଁ ଶିହରି ଉଠିଲି– ଏଠି ତେବେ ଆକାଶ ଦେଖିବାକୁ ମିଳେ ନାହିଁ । ମୋର ବାବା ଆମେରିକାରେ ଚାକିରୀ ଦରକାର ନାହିଁ । ମୁଁ ମୋର ଛିଣ୍ଡା ମସିଣାରେ ଶୋଇ ଦଶନିୟୁତ ଡଲାରର ସ୍ୱପ୍ନ ନ ଦେଖି ଆମେରିକା ଆସିବି କାହିଁକି ?' (ଅର୍ଥାତ୍ ରଜନୀବାବୁ ନ୍ୟୁୟର୍କ ଗଲେନାହିଁ । ତାଙ୍କର ପଣ– ସେ ନିଜ ରାଜ୍ୟ ଓଡ଼ିଶା ମଧ ଫେରିବେ ନାହିଁ; ଜୀବନର ଅବଶିଷ୍ଟାଂଶ ଦିଲ୍ଲୀରେ ହିଁ କଟାଇବେ ।)

'ଆପଣଙ୍କୁ ଦିଲ୍ଲୀ କେମିତି ଲାଗୁଛି ?' ପଚାରିଲି ଶ୍ରୀ ନଟିଆଲଙ୍କୁ । ସେ କହିଲେ 'ପିଲାଦିନୁ ରହି ଆସିଛି ଦିଲ୍ଲୀରେ । ବର୍ତ୍ତମାନ ଏଠି ଲୋକ ସଂଖ୍ୟା ସତୁରୀ ଲକ୍ଷ । ପଞ୍ଜାବ, ହରିଆଣା, ଉତ୍ତରପ୍ରଦେଶ, ରାଜସ୍ଥାନ–ପଡୋଶୀ ପ୍ରଦେଶମାନଙ୍କରୁ ଲୋକେ ମାଡ଼ି ଆସୁଛନ୍ତି । ସେମାନଙ୍କ ପାଇଁ କାମ ନାହିଁ; ଘର ତ ଅସଲ ସମସ୍ୟା । ଦିଲ୍ଲୀରେ ବଞ୍ଚିବା ମୁସ୍କିଲ !'

ନଟିଆଲ ତାଙ୍କର ସ୍ତ୍ରୀ, ପୁଅ, ଝିଅ, ବୋହୂ, ନାତୁଣୀ ସହିତ ଜାକିଜୁକି ହୋଇ ରହନ୍ତି ଭୟଙ୍କର ଜନାକୀର୍ଣ୍ଣ କୌଣସି ଏକ ଅଞ୍ଚଳରେ– ତାଙ୍କ ଫ୍ଲାଟ୍‌କୁ ସିଡ଼ି ଅଣଓସାରିଆ; ତାଙ୍କ ଗୃହ ଭିତରେ ଅହରହ ରାସ୍ତାରେ ଆତଯାତ ଯାନବାହନର କାନଅତଡ଼ା ଶବ୍‌ଦ ।

'ଆପଣ ଦିଲ୍ଲୀ ଛାଡ଼ିବା କଥା ଚିନ୍ତା କରୁଛନ୍ତି କି ?' ପଚାରିଲି ।

ଶ୍ରୀ ନଟିଆଲ ହସିଲେ । 'ଦିଲ୍ଲୀ କ'ଣ ଛାଡ଼ି ହୁଏ ?' ବର୍ତ୍ତମାନ ମୋତେ ତାଙ୍କର ପ୍ରଶ୍ନ ।

ଦୀନବନ୍ଧୁବାବୁ ଓଡ଼ିଶା ସରକାରଙ୍କ ଚାକିରୀରୁ ଡେପୁଟେସନ୍‌ରେ ଯାଇଛନ୍ତି ଦିଲ୍ଲୀ । ଦିଲ୍ଲୀ ସମ୍ପର୍କରେ ତାଙ୍କର ଅଭିଯୋଗ ଅନେକ– ଦିଲ୍ଲୀରେ ଜୀବନର ଗତି ଖୁବ୍ କ୍ଷୀପ୍ର; କୌଣସି ପାରିବାରିକ କାର୍ଯ୍ୟ-ଏମିତି କି ବଜାର ସଉଦାପାଇଁ ମଧ– ସମୟ ମିଳେ ନା; କାହା ସହିତ କାହାର ସମ୍ପର୍କ ନାହିଁ; ତା ଛଡ଼ା ଆଜିକାଲି ଆତଙ୍କବାଦୀଙ୍କ କାର୍ଯ୍ୟକଳାପ–ଇତ୍ୟାଦି ।

ତେବେ ତାଙ୍କର ସବୁଠାରୁ ବଡ଼ ଅସୁବିଧା–ତାଙ୍କର ବୁଢ଼ାବାପା ମାଆ । ବର୍ତ୍ତମାନ ସେମାନେ ରହନ୍ତି କଟକରେ । ଦିଲ୍ଲୀ ଆସିବାକୁ ସେମାନେ ଅନିଚ୍ଛୁକ ।

'ଆପଣ ତେବେ କେବେ ଓଡ଼ିଶା ଫେରୁଛନ୍ତି ?'

'ନା, ଆଉ ଫେରିବି କ'ଣ ? ଦିଲ୍ଲୀରେ ରହିବାପାଇଁ ଅପ୍‌ସନ୍ ଦେଇଦେଲି ।'

## କାଶ୍ମୀରରୁ କନ୍ୟାକୁମାରୀ

ମହାଶୟ, ଏହି ଦରିଦ୍ର ପତ୍ରବାହକ ଜଣେ ମାଲୟାଲୀ । ଏହି ପତ୍ରବାହକ ଓ ତାହାଙ୍କ ଭାଇ ଦୁହେଁ ମୂକ; କଥା କହି ପାରନ୍ତି ନାହିଁ । ସେ ପିତାମାତାଙ୍କୁ ହରାଇ ଅଛନ୍ତି । ତାଙ୍କର ବଡ଼ଭାଇ ଅନ୍ଧ ଏବଂ ପାଗଳ ଅଟନ୍ତି । ତାହାଙ୍କର ସାନଭଉଣୀ ଅନ୍ଧୁଣୀ ଓ ନିର୍ବୋଧ ଅଟନ୍ତି । ସେମାନେ ସମସ୍ତେ ଏହାଙ୍କ ଉପରେ ନିର୍ଭର କରନ୍ତି । ଏହାଙ୍କ ପିତା ଦକ୍ଷିଣ ଭାରତୀୟ ରେଳବାଇରେ ଚାକିରୀ କରୁଥିଲେ । ତେଣୁ ଆପଣ ଏହାଙ୍କୁ ସାହାଯ୍ୟ କରନ୍ତୁ ଏବଂ ଈଶ୍ୱର ଆପଣଙ୍କପ୍ରତି ସଦୟ ହେବେ ।

ଏହି ପତ୍ରଟି ପାଠ କରିସାରିବା ପରେ ଅନୁଗ୍ରହ ପୂର୍ବକ ଫେରାଇ ଦିଅନ୍ତୁ ।

ଡ଼ଃ ୟୁ.ରାମାରାଓ ।

ଡ଼ଃ କାର୍ଲ ।

ଏସ.ପି. ଅବଦୁଲ କରିମ ।

ବନାରସ ଷ୍ଟେସନ୍‌ରେ କେହି ଜଣେ କମ୍ପାର୍ଟମେଣ୍ଟ୍‌ର ଯାତ୍ରୀମାନଙ୍କ ହାତରେ ପୋଷ୍ଟକାର୍ଡ ଆକାରର କାଗଜ ଖଣ୍ଡେ ଖଣ୍ଡେ ଧରାଇ ଦେଇଗଲା । ସେଥିରେ ଇଂରାଜୀ ଭାଷାରେ ମୁଦ୍ରିତ ହୋଇଥିଲେ ଉପରୋକ୍ତ ଶବ୍ଦସବୁ ।

ଭୁବନେଶ୍ୱରରେ ଅବଶ୍ୟ ଏଇ ଧରଣର ଭିକ୍ଷାବୃତ୍ତି ନୂତନ ନୁହେଁ । ଘରେ ବା ଅଫିସରେ ପ୍ରଥମେ ଖଣ୍ଡିଏ ଖଣ୍ଡିଏ ନୋଟିସ୍ ଧରାଇ ଦେଇ ଚାଲିଯାଏ କେହି ଜଣେ । କିଛି ସମୟ ପରେ ଫେରିଆସେ–ଅର୍ଥ ସାହାଯ୍ୟ ଓ ନୋଟିସଟି ଫେରାଇ ନେବାପାଇଁ । ସାହାଯ୍ୟ ମିଳିବ ନାହିଁ କହିଲେ ଲୋକଟି କିଛି ବୁଝିପାରେନାହିଁ– କାରଣ ସେ 'ଘୁଙ୍ଗା' ଓ 'ବଧିର' ।।

ତେବେ ଭାରତର ଏକତା ଓ ଜାତୀୟ ସଂହତି ପାଇଁ ଏଇ ଘଟଣାଟି ଗୁରୁତ୍ୱପୂର୍ଣ୍ଣ ବିଷୟ । ସକଳ ବୈଚିତ୍ର୍ୟ ସତ୍ତ୍ୱେ ଭାରତ ଯେ ଏକ ଅଖଣ୍ଡ ରାଷ୍ଟ୍ର– ଏହାର ବହୁ ବହୁ ପ୍ରମାଣ ରହିଅଛି । ତନ୍ମଧ୍ୟରୁ ଏହା ଅନ୍ୟତମ । ଭାରତର ଯେଉଁ ଅଞ୍ଚଳକୁ ଗଲେ ମଧ ଆପଣ ବହୁ ଭିକାରୀଙ୍କ ସମ୍ମୁଖୀନ ହୋଇପାରିବେ । କେବଳ ସେତିକି ନୁହେଁ । ସମଗ୍ର ଦେଶରେ ଭିକ୍ଷାବୃତ୍ତି ପାଇଁ ଅନୁସୃତ କୌଶଳମାନ ମଧ ପ୍ରାୟ ଏକାଭଳି !

କାଶ୍ମୀରରୁ କନ୍ୟାକୁମାରୀ ଭାରତ ଏକ–ଭାରତ ସରକାରଙ୍କ ପ୍ରଚାରନାମାଟି କେବେ କିପରି ଆଖିରେ ପଡ଼େ । ବର୍ଣ୍ଣିତ ଭିକ୍ଷାବୃତ୍ତିର କୌଶଳ ତାହାହିଁ ପ୍ରମାଣ କରୁ ନାହିଁକି ?

## ବାବାଜୀ ଓ ଥାକର କମିଶନ

ଦିଲ୍ଲୀରେ କୌଣସି ରାଜ୍ୟ ସରକାରଙ୍କ ଅତିଥିଶାଳାର ଲାଉଞ୍ଜରେ ସଙ୍କୁଚିତ ହୋଇ ବସି କିଛି ଲେଖୁଥିଲେ ଧୋତି-ପଞ୍ଜାବୀ-ପରିହିତ ଜଣେ ବୃଦ୍ଧ । ଅତିଥିଶାଳାର ପରିବେଶରେ ତାଙ୍କ ଉପସ୍ଥିତି ଆପାତତଃ ଖାପଛଡ଼ା ହିଁ ଲାଗୁଥିଲା ।

ମୋତେ ଲାଉଞ୍ଜରେ ଦେଖି କଥାଭାଷା ହେବାପାଇଁ ଉତ୍ସାହ ଦେଖାଇଲେ ସେ । ମୋ ଆଗରେ ଧରି ରଖିଲେ କାଗଜ ଖଣ୍ଡିଏ–ଇନ୍ଦିରାଗାନ୍ଧୀଙ୍କ ହତ୍ୟା ସମ୍ପର୍କରେ ତଦନ୍ତ ପାଇଁ ନିଯୁକ୍ତ ଥାକର କମିଶନଙ୍କ ନିକଟରୁ ତାହା ଥିଲା ବୃଦ୍ଧଙ୍କ ନିକଟକୁ ପତ୍ରଟିଏ । ବୃଦ୍ଧଙ୍କ କୌଣସି ପତ୍ରର ଉତ୍ତରରେ ଥାକର କମିଶନ ଲେଖିଥିଲେ– 'ଆପଣ ଅମୁକ ତାରିଖରେ ଦିଲ୍ଲୀରେ ପହଞ୍ଚି ଇନ୍ଦିରାଙ୍କ ହତ୍ୟା ସମ୍ପର୍କରେ ଆପଣଙ୍କ ବକ୍ତବ୍ୟ ବୟାନ କରନ୍ତୁ ।'

କହିଲେ ବୃଦ୍ଧ, 'ମୁଁ ଜଣେ ବାବାଜୀ । ଇନ୍ଦିରାଙ୍କ ହତ୍ୟାର ଗୂଢ଼ ରହସ୍ୟ ମୋତେ ଜଣା ।'

ଏବଂ ମୋ ମନ୍ତବ୍ୟକୁ ଅପେକ୍ଷା ନକରି କହି ଚାଲିଲେ ସେ–'ଏଇ ହତ୍ୟା ରହସ୍ୟ ପାଇଁ ପୃଥିବୀ ସାରା ଅନୁସନ୍ଧାନ କରିବା ନିରର୍ଥକ । ମଣିଷର ନିଜ ଭିତରେ ହିଁ ଲୁଚି ରହିଛି ତାହାର ହତ୍ୟାକାରୀ– ଠିକ୍ ଯେମିତି ମଣିଷ ଶରୀର ଭିତରେ ହିଁ ଗୁହ୍ୟ ରହିଥାଏ ତାହାର ବିଷ୍ଠା । ମଣିଷ କିନ୍ତୁ ତାହା ସ୍ୱୀକାର କରିବାକୁ ପ୍ରସ୍ତୁତ ନଥାଏ ।'

ଅକାଟ୍ୟ ଯୁକ୍ତି !! ମୁଁ ଅବଶ୍ୟ ଅଧିକ ଶୁଣିବା ପାଇଁ ଆଗ୍ରହୀ ନଥିଲି ।

ଭାରତୀୟ ଜୀବନରେ ଆଦିମ ଯୁଗର ଖୁବ୍ ଗୋଟାଏ ଶକ୍ତିଶାଳୀ ଭୂମିକା ଗ୍ରହଣ କରି ଆସିଛନ୍ତି ବାବାଜୀମାନେ । ଋଷି, ସନ୍ୟାସୀ, ବାବା–ବହୁ ରୂପରେ ସେମାନଙ୍କର ଆବିର୍ଭାବ ଘଟିଛି ଧର୍ମ, ଦର୍ଶନ, ସାହିତ୍ୟ, ରାଜନୀତିରେ । ତଥାପି କେଜାଣି କାହିଁକି ଦାରିଦ୍ର୍ୟ, ବ୍ୟାଧି, ହିଂସା ଓ କୁସଂସ୍କାରରେ ସଢ଼ି ଲାଗିଛି ଏତେ ବଡ଼ ଦେଶଟା !

ତଥାପି ଯେ ବାବାଜୀମାନେ ନିରୁତ୍ସାହିତ ନ ହୋଇ ଦେଶର ବିଭିନ୍ନ ସମସ୍ୟା ସମାଧାନ ପାଇଁ ଆଗେଇ ଆସୁଛନ୍ତି, ଏହା ନିଶ୍ଚିତ ଭାବରେ ଆଶ୍ୱାସନାର କଥା !

### ଶାନ୍ତିର ଦେଶ

ଦିଲ୍ଲୀରୁ ଗୋଟାଏ କମ୍ପାର୍ଟମେଣ୍ଟରେ ପାଖକୁ ପାଖ ବସି ଆସୁଥାନ୍ତି ହିନ୍ଦୀ-ଭାଷୀ ଦମ୍ପତିଟିଏ ଓ ଜଣେ ଓଡ଼ିଆ ଯୁବକ । ଓଡ଼ିଆ ଯୁବକ କାର୍ଯ୍ୟ କରନ୍ତି ତାଳଚେର କୋଇଲା ଖଣି ଅଞ୍ଚଳରେ; କେତେଜଣ ସଙ୍ଗୀଙ୍କ ସହ ପ୍ରଥମଥର ପାଇଁ ଯାଇଥାନ୍ତି ଦିଲ୍ଲୀ । ତାଙ୍କର ମୂଲ୍ୟବାନ ଦିଲ୍ଲୀ ଅନୁଭୂତି ବେଶ୍ ପ୍ରଗଳ୍ଭ ଭାବରେ ସେ ବର୍ଣ୍ଣନା କରୁଥାନ୍ତି ହିନ୍ଦୀ ଦମ୍ପତିଟି ଆଗରେ ।

ଢେଙ୍କାନାଳୀ ଓଡ଼ିଆ ଉଚ୍ଚାରଣରେ ସେ ଗପି ଚାଲିଥାନ୍ତି ହିନ୍ଦୀ । ହିନ୍ଦୀ ଦମ୍ପତି ମୋଟାମୋଟି ତାହା ସମଝି ପାରୁଥାନ୍ତି ଓ ମନ୍ତବ୍ୟ ଦେଉଥାନ୍ତି କ୍ୱଚିତ ।

ଓଡ଼ିଆ ଯୁବକଙ୍କ ବକ୍ତବ୍ୟର ସାରାଂଶ–ଦିଲ୍ଲୀ ଦଲାଲୀ ଜାଗା । ଉତ୍ତର ଭାରତରେ ସବୁଆଡ଼େ ଅଶାନ୍ତି, ଦଙ୍ଗାହାଙ୍ଗାମା, ଜାଳିଆତି । ଏଇ ପଞ୍ଜାବ କଥା ତ

ଦେଖୁଛ... । କିନ୍ତୁ ଆମ ଓଡ଼ିଶା ଶାନ୍ତିର ଦେଶ । ଦଙ୍ଗା ହଙ୍ଗାମା, ଗଣ୍ଡଗୋଳରେ ସେଠି ଲୋକେ ମରନ୍ତି ନାହିଁ ।

ଓଡ଼ିଆ ଯୁବକଙ୍କ ବକ୍ତବ୍ୟ ପରେ ସଂକ୍ଷିପ୍ତ ମନ୍ତବ୍ୟଟିଏ ଦେଲେ ହିନ୍ଦୀଭାଷୀ ମହିଳା, 'ତୁମ ଦେଶରେ ଦଙ୍ଗାହାଙ୍ଗାମାରେ କେହି ମରିବା କ'ଣ ଦରକାର ? ପ୍ରତିବର୍ଷ ଝଡ଼ବାତ୍ୟାରେ ତ ତୁମର ଅନେକ ଲୋକ ମରନ୍ତି... ।'

ଓଡ଼ିଆ ଯୁବକ ବର୍ତ୍ତମାନ ଭଦ୍ରମହିଳାଙ୍କୁ ନୀରବରେ ଜୁଳୁଜୁଳୁ ଅନାଇଲେ । କଣ ଯେମିତି କହିବେ କହିବେ ହେଲେ, କହିପାରିଲେ ନାହିଁ ।

**ହସ୍ତରେଖା ଦେଖାଇଏ**

ବନାରସ ଷ୍ଟେସନରେ ସେ ଆମ କମ୍ପାର୍ଟମେଣ୍ଟରେ ଚଢ଼ିଲେ ଓ ମୋ ସ୍ଲିପର ବର୍ଥ ଉପରେ ନୀରବରେ ବସି ଢୁଳାଇବାକୁ ଲାଗିଲେ ।

ଅଳ୍ପ ସମୟପରେ ପହଞ୍ଚିଗଲେ ଟି.ଟି.ଆଇ. । କହିଲେ ଚଢ଼ାଗଳାରେ, 'ପଣ୍ଡିତଜୀ, ଆପଣଙ୍କ ରିଜର୍ଭେସନ୍ ନାହିଁ । ଅନ୍ୟ କମ୍ପାର୍ଟମେଣ୍ଟ୍‌କୁ ଚାଲି ଯାଆନ୍ତୁ ।'

ପଣ୍ଡିତଜୀ ଆଖି ଖୋଲି ଟି.ଟି.ଆଇ.ଙ୍କ ବକ୍ତବ୍ୟ ଶୁଣିଲେ ଓ ଟିଟି.ଆଇ.ଙ୍କ ପ୍ରସ୍ଥାନ ପରେ ଯଥାରୀତି ଢୁଳାଇବାରେ ଲାଗିଲେ । ତାଙ୍କର ସଂକ୍ଷିପ୍ତ ଜାଗରଣ କାଳରେ ଜାଣିବାର ସୁଯୋଗ ମିଳିଲା– ଦିଲ୍ଲୀ ହିଁ ତାଙ୍କର ଗନ୍ତବ୍ୟସ୍ଥଳ ।

ପଣ୍ଡିତଜୀଙ୍କ ନିକଟରେ କ୍ଷୁଦ୍ର କାଠ ବାକ୍‌ସଟିଏ । ତଥି ଉପରେ ଲେଖା ଥିଲା– 'ହସ୍ତରେଖା ଦେଖାଇଏ– ପଣ୍ଡିତ ରାମଶଙ୍କର ।'

ଏକବିଂଶ ଶତାବ୍ଦୀ ଲାଗି ପ୍ରସ୍ତୁତ ହେବା ପାଇଁ ଭାରତକୁ ଆହ୍ୱାନ ଦେଇଛନ୍ତି ଆମର ଯୁବ ପ୍ରଧାନମନ୍ତ୍ରୀ । ସେଇଥିପାଇଁ ହୁଏତ କାଳବିଳମ୍ବ ନ କରି ପଣ୍ଡିତ ରାମଶଙ୍କର ବନାରସରୁ ଯାତ୍ରା କରୁଛନ୍ତି ଦିଲ୍ଲୀ– ଏକବିଂଶ ଶତାବ୍ଦୀରେ ଦିଲ୍ଲୀର ନାଗରିକମାନଙ୍କ ଭାଗ୍ୟରେ କି ଫଳ ଫଳିବ, ଯଥେଷ୍ଟ ଆଗରୁ ସେମାନଙ୍କୁ ଜଣାଇଦେବା ପାଇଁ ।। ❐

(୧୯୯୫)

# ଅଦୃଶ୍ୟ ମଣିଷ

ଭୁବନେଶ୍ୱରରୁ ଟ୍ରେନ୍ ଯୋଗେ ଦିଲ୍ଲୀ ପ୍ରାୟ ଛତିଶି ଘଣ୍ଟାର ରାସ୍ତା । ଓଡ଼ିଶା ପରେ ପଶ୍ଚିମବଙ୍ଗ, ବିହାର, ଉତ୍ତରପ୍ରଦେଶ– ପ୍ରାୟ ସତରଶହ କିଲୋମିଟର ଅତିକ୍ରମ କରିବା ପରେ 'ନଗରେସୁ ଦିଲ୍ଲୀ' । ଏହି ଦୀର୍ଘ ସମୟ ଓ ପଥସାରା ସେମାନେ ରହିଥାନ୍ତି ପାଖେ ପାଖେ–ଜଣକ ପରେ ଜଣେ ଆସି ପହଞ୍ଚି ଯାଉଥାନ୍ତି ।

ଅଥଚ କି ଆଶ୍ଚର୍ଯ୍ୟ ! କିପରି କେଜାଣି ଆମେ ଦେଖିପାରୁନା ସେମାନଙ୍କ ଚେହେରା, ଶୁଣିପାରୁନା ସେମାନଙ୍କ ଭାଷା ! ଆମ ଯାତ୍ରା– ଅନୁଭୂତିରେ ସ୍ଥାନ ନ ଥାଏ ସେମାନଙ୍କର !

ମୋଗଲସରାଇରୁ ଟ୍ରେନ ଭୁବନେଶ୍ୱର ଅଭିମୁଖେ ଏଇମାତ୍ର ଛାଡ଼ିଥାଏ । 'ଦଶ ପଇସା ଦିଓନା, ଧରମ ହୋଗା'– କହି କହି କମ୍ପାର୍ଟମେଣ୍ଟରେ ଘୁରୁଥାଏ ଦଶ ବାରବର୍ଷର ଝିଅଟିଏ । ସୁସ୍ଥ ସବଳ ଚେହେରା । 'କାମ କେଁୟା ନେହିଁ କରତୀ ?' ସାମାନ୍ୟ ବିରକ୍ତିରେ ପଚାରିଲି । ସେ ମୋତେ ବୁଲି ଅନାଇଲା । ମୋତେ କିନ୍ତୁ ସେ ଦେଖି ପାରି ନଥିବ ନିଶ୍ଚୟ । କାରଣ ତା'ର ଆଖି ଦୁଇଟି ନଥିଲା– ଆଖି ଥିବା ଜାଗାରେ ଦୁଇମେଞ୍ଚା ଧଳା ମାଂସ । ଅପ୍ରତ୍ୟାଶିତ ଧରାପଡ଼ିଥିବା ଚତୁର ଅପରାଧୀ ପରି ନୀରବ ରହିଲି । ତା'ର ଧଳା ଦୃଶ୍ୟହୀନ ଚାହାଣୀହିଁ ଥିଲା ମୋ ପ୍ରଶ୍ନର ଉତ୍ତର !

ଠିକ୍ ତା ପରେ ପରେ ଜଣେ ତରୁଣୀ ମାଆ ଓ ଅଳ୍ପ କେତେ ମାସର ଶିଶୁ । ମାଆ ଅନ୍ଧୁଣୀ, ଦରାଣ୍ଡି ଦରାଣ୍ଡି କମ୍ପାର୍ଟମେଣ୍ଟ୍ ଭିତରେ ସିଧା ଆଗେଇ ଯାଉଥାଏ, ଗୋଟିଏ ବି ଶବ୍ଦ ଉଚ୍ଚାରଣ କରୁ ନଥାଏ । ଗୋଟିଏ ହାତରେ ଶିଶୁଟିକୁ କାଖରେ ଯାକି ଅନ୍ୟ ହାତଟିକୁ ଆଗକୁ ବଢ଼ାଇ ଦେଇଥାଏ ଯାତ୍ରୀମାନଙ୍କ କରୁଣାଭିକ୍ଷା ପାଇଁ !

ପ୍ରାୟ ଦୁଇ ତିନି ଘଣ୍ଟା ବ୍ୟବଧାନରେ ହାତରେ ଛିଣ୍ଡା ଝାଡୁଣିଟାଏ କିମ୍ବା ମଇଳା ଅଖା ଖଣ୍ଡେ ଧରି କମ୍ପାର୍ଟମେଣ୍ଟ୍ ଚଟାଣ ସଫାକରି ପକାଉଥାନ୍ତି ବାରଚଉଦ ବର୍ଷର ଶିଶୁମାନେ । ଚିନାବାଦାମ ଚୋପା, ପୋଡ଼ା ସିଗାରେଟ, ଫଳଚୋପା, ଧୂଳି--ସବୁ ମଇଳା ଏକାଠି କରି ଗୋଟାଇ ନେଉଥାନ୍ତି ସେମାନେ ଓ ତାପରେ କମ୍ପାର୍ଟମେଣ୍ଟ ସାରା ବୁଲି ମାଗୁଥାନ୍ତି ପଇସା । ଲକ୍ଷ୍ୟକଲି, ମଇଳା ସଫା କରୁଥିବା ଗୋଟିଏ ପିଲାର ଗୋଡ଼ଟାଏ ନାହିଁ । ମଇଳା ସଫା କରିସାରି ଗୋଟିଏ ଗୋଡ଼ରେ

ତେଇଁ ତେଇଁ ସେ ପଇସା ମାଗୁଥାଏ ଓ ଭଙ୍ଗା ଓଡ଼ିଆରେ କହୁଥାଏ--'ଯୁଡ଼େ ପଇସା ଦିଅ ବାବୁ' ।

'ବଡ଼ଦାଣ୍ଡେ କେତେଦିନ ପତାଇବି ହାତରେ' । ଖଡ଼ଗପୁର ଷ୍ଟେସନରେ ବର୍ତ୍ତମାନ ହାତ ପତାଉଥିଲା ତରୁଣଟିଏ । ରକ୍ତହୀନତାରେ ଦେହ ତା'ର ହଳଦିଆ, ମୁଣ୍ଡବାଳ ଟାଆଁସା । ଏମିତି କେତେଦିନ ସେ ହାତପତାଇ ଆସିଛି ଓ ଆସୁଥିବ, କିଏ ଜାଣେ !! X X X

ଭାରତର ଧର୍ମ, ସାହିତ୍ୟ, ଇତିହାସରେ ଭିକାରୀ ଓ ଭିକ୍ଷାବୃତ୍ତି କେବେ ନଥିଲେ ? ରାମାୟଣ ଯୁଗରେ ବାବାଜୀବେଶୀ ରାବଣକୁ ଭିକ୍ଷା ଦେବାକୁ ଯାଇ ସୀତା ଅପହୃତା ହୋଇଥିଲେ ଲଙ୍କା ରାଜ୍ୟକୁ । ଭିକ୍ଷାବୃତ୍ତି ହିଁ ଥିଲା ପରମ କାରୁଣିକ ବୁଦ୍ଧଙ୍କର ଜୀବନ ଧାରଣର ଉପାୟ । ପ୍ରାଚୀନ ଭାରତର ଅସଂଖ୍ୟ ରୂପକ ଓ ଗଳ୍ପରେ ଭଗବାନ ଭିକାରୀ ରୂପରେ ମର୍ତ୍ତ୍ୟଲୋକରେ ବିଚରଣ କରି ମଣିଷମାନଙ୍କ ଚରିତ୍ର ବିଚାରିଥିବାର ଉଲ୍ଲେଖ ରହିଅଛି ।

ଆଧୁନିକ ଲେଖକମାନେ ଭିକାରୀମାନଙ୍କ ସମ୍ପର୍କରେ ବହୁ ତଥ୍ୟ ବାଢ଼ିଯାଇଛନ୍ତି । ଯେପରି, ଭାରତରେ ଦୁର୍ଭିକ୍ଷର ଭୟାବହତା ବର୍ଣ୍ଣନା କରିବାକୁ ଯାଇ ଫକୀରମୋହନଙ୍କଠାରୁ ପ୍ରେମଚନ୍ଦଙ୍କ ଯାଏଁ ମୋଟାମୋଟି କହିବାକୁ ଚାହିଁଛନ୍ତି– ଅମୁକ ବର୍ଷ ଦୁର୍ଭିକ୍ଷ ଏତେ ଭୟଙ୍କର ହେଲା ଯେ, ଭିକାରୀକୁ ଭିକଗଣ୍ଡାଏ ସୁଦ୍ଧା ମିଳିଲା ନାହିଁ । (ଅର୍ଥାତ୍, ସମୃଦ୍ଧି ସମୟରେ ସୁଦ୍ଧା ଭାରତରେ ଭିକାରୀମାନଙ୍କର ଅଭାବ ନଥାଏ ।)

ହଜାର ହଜାର ବର୍ଷଧରି ଭିକାରୀ ଓ ଭିକ୍ଷାବୃତ୍ତି ଭାରତୀୟ ଧର୍ମ, ଇତିହାସ ଓ ଜୀବନର ଅଂଶ ହୋଇ ଆସିଥିବାରୁ, ସ୍ୱାଭାବିକଭାବେ ଏମାନଙ୍କ ପ୍ରତି ଆମ ମନୋଭାବ ଆଶ୍ଚର୍ଯ୍ୟଜନକ ଭାବେ ଜଟିଳ ହୋଇପଡ଼ିଛି । କେବେ ଭିକାରୀ ଉଦ୍ଦେଶ୍ୟରେ ପାଞ୍ଚପଇସିଟିଏ ଫିଙ୍ଗିଦେଇ ଭବିଷ୍ୟତ ପାଇଁ ଆମେ କିଛି ଧର୍ମ ସଞ୍ଚୟ କରିପକାଉଛୁ ତ କେବେ ଭିକାରୀଟା ତା କର୍ମଫଳ ଭୋଗୁଛି ଯୁକ୍ତିରେ ତା ପିଛା କୁକୁର ଲଗାଇ ଦେଉଛୁ । ଅଧିକାଂଶ ସମୟରେ କିନ୍ତୁ ଆମେ ତା ଉପସ୍ଥିତିକୁ ସ୍ୱୀକାର ହିଁ କରିନାହୁଁ ।

ସେଇଥିପାଇଁ ହୁଏତ ଆମ ସରକାରୀ/ବେସରକାରୀ ଯୋଜନା/ଚିନ୍ତାଧାରାରେ ଏଇ ଅଦୃଶ୍ୟ ମନୁଷ୍ୟମାନଙ୍କ ସ୍ଥାନ ହିଁ ନାହିଁ । ସିଧାସଳଖ ଆମେ ଏ ଯାବତ ବୁଝିବାକୁ

ଅକ୍ଷମ ହୋଇଛୁ ଯେ ଆମର ରୁଗ୍‌ଣ ଓ ସାମନ୍ତବାଦୀ ସାମାଜିକ ସଂସ୍କାର ଶିକାର ଏଇ ନିରୀହ ଦୁର୍ବଳ ମଣିଷମାନେ ଓ ସେମାନଙ୍କୁ ନିରାପତ୍ତା ଓ ସମ୍ମାନ ଯୋଗାଇଦେବା ଆମର ଅନ୍ୟତମ ମୌଳିକ କର୍ତ୍ତବ୍ୟ । X X X

ବେଶ୍ କିଛି ବର୍ଷ ତଳେ ପୁରୀ ସିଂହଦ୍ୱାର ନିକଟରେ ବୁଢ଼ାଟିଏ ଭିକ ମାଗୁଥିଲା---'ଅଦୃଶ୍ୟ ଲୋକ ବାବୁ, ସାହାଯ୍ୟ କଲେ ଧର୍ମ ହେବ ।'

ମୁଁ ଓ ମୋର ଜଣେ ବନ୍ଧୁ ଭିକାରୀର କଥାରେ ଆମୋଦିତ ହେଲୁ । ବନ୍ଧୁ ହସି ହସି ବୁଝାଇଦେଲେ, 'ଆରେ ତୁ ଅଦୃଶ୍ୟ ଲୋକ ନୋହୁଁ, ତୋତେ ସମସ୍ତେ ଦେଖି ପାରୁଛନ୍ତି । କହ, ଅନ୍ଧଲୋକ ।'

ବୁଢ଼ା ଆମକଥା ଶୁଣିଲା, କିନ୍ତୁ ତଥାପି କହିଚାଲିଲା ପୂର୍ବଭଳି, 'ଅଦୃଶ୍ୟ ଲୋକ, ବାବୁ... ।'

ସେଦିନ ସେ ବୁଢ଼ା ତା ନିଜ ବିଷୟରେ ଠିକ୍ କହୁଥିଲା । ଆଜି ଏତେବର୍ଷ ପରେ ମୁଁ ତାହା ବୁଝି ପାରିଛି । ❒

(୧୯୮୪)

# ତିନୋଟି ଗପ

## ପ୍ରମୋଦ

ଦିଲ୍ଲୀର କନ୍ନଟ ପ୍ଲେସରେ ହଠାତ୍ ଆର୍ତ୍ତନାଦକରି ସ୍କୁଟର ଅଟକିଲା । ମୁଁ ଓ ସ୍କୁଟର ଚଳାଉଥିବା ତରୁଣ ବନ୍ଧୁ ଗାଡିରୁ ଓହ୍ଲାଇଲୁ ।

ତରୁଣ ବନ୍ଧୁ ସ୍କୁଟରର ପ୍ଲଗଟି କାଢ଼ି ମଇଳା ସଫା କରିବାରେ ଲାଗିଲେ । ହଠାତ୍ କୁଆଡୁ ଆସି ତାଙ୍କ ପାଖରେ ପହଞ୍ଚିଗଲା ବାର/ଚଉଦ ବର୍ଷର ବାଳକଟିଏ । ପ୍ଲଗଟି ସଫା କରିବାରେ ସାହାଯ୍ୟ କଲା ତରୁଣ ବନ୍ଧୁଙ୍କୁ ।

ସ୍କୁଟର ପୁଣି ଷ୍ଟାର୍ଟ ହେଲା । ବର୍ତ୍ତମାନ ମୁଁ ବାଳକଟିର ପିଠି ଥାପୁଡାଇ ତାକୁ ଧନ୍ୟବାଦ ଦେଲି । ତା'ପରେ ଆମର କଥାବାର୍ତ୍ତା:

ତୁମର ନାମ ?

ପ୍ରମୋଦ ।

ସ୍କୁଲକୁ ଯାଉଛ ?

ନା ।

କ'ଣ କରୁଛ ?

ଏଇଠି ଗରାଜଟିଏ ଖୋଲିବି ।

ମେକାନିକ୍ କାମ କୋଉଠୁ ଶିଖିଲ ?

ଗ୍ରୀନପାର୍କରୁ ।

ଖୋଦ୍ ରାଜଧାନୀ ଦିଲ୍ଲୀର କେନ୍ଦ୍ରସ୍ଥଳରେ ବାରବର୍ଷର ବାଳକଟିଏ ଗରାଜ ଖୋଲିବା ଏବଂ ଭାରତ ସରକାରଙ୍କ କଳାପଟା ଅଭିଯାନ ଇତ୍ୟାଦି ଯୋଜନାରେ ପ୍ରାଥମିକ ଶିକ୍ଷା ପାଇଁ କୋଟି କୋଟି ଟଙ୍କା ଖର୍ଚ୍ଚ କରାଯିବା ମଧ୍ୟରେ କିଛି ସମ୍ପର୍କ ଥାଇପାରେ କି ? ଆସନ୍ତାଥର ଦିଲ୍ଲୀ ଗଲେ କନ୍ନଟ ପ୍ଲେସରେ ପ୍ରମୋଦର ଗରାଜ ଦେଖିବାକୁ ମିଳିବ ହୁଏତ ।

## ଫିରିଡମ୍ ଫାଇଟର

ଦିଲ୍ଲୀରୁ ଛାଡିଲା ପୁରୁଷୋତ୍ତମ ଏକ୍‌ସପ୍ରେସ୍ । ଟୁ ଟିୟର ଏ.ସି. କମ୍ପାର୍ଟମେଣ୍ଟରେ ମୋର ଅପର୍ ବର୍ଥ୍ । କିଛି ସମୟପରେ ଦୁଇଜଣ ଚନ୍ଦା ପୁଥୁଳ ବୃଦ୍ଧ କିଛି ପେଟି ଓ ବାକ୍‌ସ ସହ ପ୍ରବେଶ କଲେ ସେଇ କମ୍ପାର୍ଟମେଣ୍ଟରେ । ଠିଆ ହୋଇ ରହିଲେ ବର୍ଥ୍ ନିକଟରେ । ଟ୍ରେନ୍ ଚାଲିବା ଆରମ୍ଭ କରନ୍ତେ ପ୍ରଥମେ ସନ୍ତର୍ପଣରେ ଓ ପରେ ଆତ୍ମବିଶ୍ୱାସର ସହିତ ବସିଲେ ତଳ ବର୍ଥରେ । ତଳ ବର୍ଥରେ ଶୋଇଥିବା ଭଦ୍ରବ୍ୟକ୍ତି ନିଜ ଗୋଡ ଜାକି ବୃଦ୍ଧ ଦୁଇଜଣଙ୍କୁ ଆରାମରେ ବସିବାର ବ୍ୟବସ୍ଥା କରିଦେଲେ । ବର୍ତ୍ତମାନ ବୃଦ୍ଧ ଦୁଇଜଣଙ୍କୁ ମୋର ପ୍ରଶ୍ନ :

ଆପଣଙ୍କ ରିଜରଭେସନ ଅଛି ?

ସେମାନଙ୍କ ଉତ୍ତର:

ଆମେ ଫିରିଡମ୍ ଫାଇଟର୍ ।

ତା'ପରେ ନୀରବତା ।

ଇଂରେଜ ସରକାର ଅମଳରେ ଆଇନ ଭାଙ୍ଗିଥିବା ଏଇ ବୃଦ୍ଧମାନେ ବର୍ତ୍ତମାନ ଫିରିଡମ୍ ଫାଇଟର । ଆନନ୍ଦର କଥା, ଏବେ ମଧ୍ଯ ସେମାନେ ଆଇନ୍ ଭାଙ୍ଗିବାରେ ଲାଗିଛନ୍ତି । ରିଜରଭେସନ ନ ଥାଇ ମଧ୍ୟ ଏ.ସି. କମ୍ପାର୍ଟମେଣ୍ଟରେ ବେଶ୍ ଆରାମରେ ଉପଭୋଗ କରୁଛନ୍ତି ସ୍ୱାଧୀନ ଭାରତ ଭୂମିର ରେଳଯାତ୍ରା ।

## ଧନୀ ଜାପାନୀ

ଜାପାନୀମାନେ ଯେ ଅତ୍ୟନ୍ତ ଧନୀ ଜାତି, ଏହା ନ ଜାଣେ କିଏ ? ତେବେ ସେମାନଙ୍କ ଧନ ପ୍ରାଚୁର୍ଯ୍ୟର ପ୍ରମାଣଟିଏ ମିଳିଲା ଗତ ରେଳଯାତ୍ରାରେ ।

ମୋଗଲ ସରାଇରେ କମ୍ପାର୍ଟମେଣ୍ଟକୁ ଉଠିଲେ ଜଣେ ଜାପାନୀ ତରୁଣ । ଆଠନମ୍ବର ବର୍ଥ ଖୋଜି ଖୋଜି ଯଥାସ୍ଥାନରେ ପହଞ୍ଚିଲେ । ସେ ବର୍ଥ ଅଧିକାର କରିଥିବା ବିହାରୀ ବ୍ୟକ୍ତିଟି ଯାଇଥିଲେ ଟଏଲଟକୁ । ତରୁଣ ଜାପାନୀ ନିଃସଂକୋଚରେ ବର୍ଥ ଉପରେ ବେଡିଂ ଇତ୍ୟାଦି ରଖି ବର୍ଥଟି ଅଧିକାର କଲେ ଓ ଗୋଟିଏ କଡକୁ ଘୁଞ୍ଚାଇ ଦେଲେ ପୂର୍ବତନ ଅଧିକାରୀଙ୍କ ବ୍ୟାଗ, ବିଛଣାଚାଦର ଇତ୍ୟାଦି ।

ବିଚରା ବିହାରୀ ଟଏଲେଟରୁ ଫେରି ସ୍ୱୀୟ ବର୍ଥରେ ଜାପାନୀଟିଏ ଦେଖି ହଠାତ୍ କିଛି ବୁଝି ପାରିଲେ ନାହିଁ । ପରବର୍ତ୍ତୀ ଷ୍ଟେସନରେ ତାଙ୍କର ଓହ୍ଲାଇ ଯିବାର ଥିଲା-ସେଥିପାଇଁ ବିଶେଷ ଡେରି ନଥିଲା । ତେଣୁ ସେ ନିଜ ବର୍ଥ ଫେରି ପାଇବାକୁ ଉଦ୍ୟମ ନ କରି ବସି ରହିଲେ ଖାଲିଥିବା ଲୋୟର ବର୍ଥରେ ।

ଏଣେ ଜାପାନୀଟି ନିଜ ବର୍ଥ ଉପରେ ଶୋଇରହି ବିଡି ଖଣ୍ଡିଏ ଲଗାଇଲେ ଓ ପଢ଼ି ଚାଲିଲେ ଜାପାନୀ ବହିଟିଏ । ମୋ ସହିତ ସ୍ୱଳ୍ପ କଥୋପକଥନରେ ସେ କହି ସାରିଥିଲେ–ସେ ଦିଲ୍ଲୀ, ଆଗ୍ରା, ମୋଗଲ ସରାଇ ଦର୍ଶନ ପରେ ବାହାରିଛନ୍ତି ପୁରୀ । ସେଠାରେ ତାଙ୍କୁ ଅପେକ୍ଷା କରିଥିବେ ତାଙ୍କର ଜଣେ ବନ୍ଧୁ ସମୁଦ୍ରକୂଳର କୌଣସି ହୋଟେଲରେ ।

କିଛି ସମୟ ପରେ ଆସି ପହଞ୍ଚିଲେ ଜଣେ ଟିଟିସି । ବର୍ତ୍ତମାନ ସେମାନଙ୍କର କଥାବାର୍ତ୍ତା :

ଆପଣଙ୍କର ରିଜରଭେସନ ଅଛି ?

ହଁ (ଜାପାନୀ ଟିଟିସିଙ୍କ ହାତକୁ ଟିକେଟଟି ବଢ଼ାଇ ପଢ଼ିବାରେ ଲାଗିଲେ ବହିଟି) ।

ଟିଟିସି ଟିକେଟ୍‌ଟି ଦେଖି କୌଣସି କାରଣରୁ ଟିକିଏ ଚିନ୍ତିତ ମନେ ହେଲେ । ବେଶ୍ କିଛି ସମୟ ଟିକେଟ ଓ ନିଜ ରିଜରଭେସନ ଚାର୍ଟ ନିରୀକ୍ଷଣ କରିସାରିବା ପରେ ଜାପାନୀକୁ କହିଲେ, 'ଆପଣଙ୍କର ଏହି ରିଜରଭେସନ ଥିଲା ମାର୍ଚ୍ଚ ଦୁଇ ତାରିଖ ପାଇଁ । ଆଜି ମାର୍ଚ୍ଚ ତିନି ତାରିଖ । ଏହି ଟିକେଟ କ୍ୟାନସେଲ ହୋଇଯାଇଛି ।'

ବର୍ତ୍ତମାନ ଜାପାନୀ ବର୍ଥ ଉପରେ ଟେକି ହୋଇ ବସିଲେ ଓ ନିଜ ଘଣ୍ଟାଟିକୁ ଅନାଇଲେ କେତେକ୍ଷଣ । ତା'ପରେ ନିଜ ଟିକେଟ୍‌ଟିକୁ ।

ଟିଟିସି ଇଂରାଜୀ କହିବାରେ ଅଭ୍ୟସ୍ତ ନଥିଲେ । ମୋତେ ହିଁ ବୁଝାଇ ଦେବାକୁ ହେଲା ଯେ ବର୍ତ୍ତମାନ ଜାପାନୀକୁ ଦେବାକୁ ହେବ ଏକହଜାର ପଚାଶ ଟଙ୍କା ଆଜିର ଟିକେଟ ପାଇଁ । ନଚେତ୍ ତାଙ୍କୁ ପରବର୍ତ୍ତୀ ଷ୍ଟେସନରେ ଚୁପଚାପ ଓହ୍ଲାଇ ଯିବାକୁ ପଡ଼ିବ ।

ଏକ ହଜାର ପଚାଶ ଟଙ୍କା ବଢ଼ାଇଦେଲେ ଜାପାନୀ ଟିଟିସିଙ୍କୁ । କେହି ଜଣେ କହୁଥିବାରୁ ଶୁଣାଗଲା, 'ଆମର ଯାହା ହଜାରେ ଟଙ୍କା, ଜାପାନୀଙ୍କ ପାଇଁ ସେଇଟା ତିରିଶ କି ଚାଳିଶି । ଟଙ୍କାର କିଛି ଅଭାବ ନାହିଁ ସେମାନଙ୍କର ।'

ହଜାରେ ପଚାଶ ଟଙ୍କା ଟିଟିସିଙ୍କୁ ବଢ଼ାଇ ଦେବା ପରେ ଜାପାନୀଙ୍କ ମନର ଅବସ୍ଥା କିପରି ହୋଇଥିବ, ତାଙ୍କର ମୁଖଭଙ୍ଗୀରୁ ବୁଝିବା କିନ୍ତୁ ସହଜ ନ ଥିଲା । ❒

(୧୯୯୬)

# ରାଜପଥ ଜନପଥ

## ଚାରମିନାର୍‌ର ଭିକାରୀ

ଜାନୁୟାରୀ ୨୬-୧୯୮୧ । ସ୍ୱାଧୀନ ସାର୍ବଭୌମ ଭାରତର ଗଣତନ୍ତ୍ର ଦିବସ । ସାଧାରଣ ଛୁଟିଦିନ ଓ ପାଗ ଉଜ୍ଜ୍ୱଳ ହୋଇଥିବାରୁ ହାଇଦରାବାଦର ଚାରମିନାର୍ ନିକଟରେ ବେଶ୍ ଲୋକାରଣ୍ୟ ଲାଗି ରହିଥିଲା । ମଧ୍ୟାହ୍ନରେ ସେଇ ଲୋକାରଣ୍ୟ ଓ ନିକଟବର୍ତ୍ତୀ ଅଞ୍ଚଳର ଦୋକାନଗୁଡ଼ିକର ସମ୍ଭାର ମୁଁ ଲକ୍ଷ୍ୟ କରୁଥିଲି ।

'ସାହେବ'– କେବଳ ଶବ୍ଦ ନୁହେଁ, ଲୋକଟିର ଚେହେରା ଓ ଅଙ୍ଗ ଭଙ୍ଗୀରେ ଆଶ୍ଚର୍ଯ୍ୟ ହୋଇ କିଛିକ୍ଷଣ ତା' ଆଡ଼େ ଅନାଇଲି । ପ୍ରାୟ ଛଅ ଫୁଟ ଉଚ୍ଚ, ସୂର୍ଯ୍ୟ କିରଣରେ ଦଗ୍ଧ, ଗୌରବର୍ଣ୍ଣ, ଶ୍ମଶ୍ରୁଧାରୀ ମୁସଲମାନ ପୌଢ଼ ଜଣେ । ପ୍ରଶସ୍ତ ଛାତି, ମୁଖମଣ୍ଡଳରେ ପ୍ରଚଣ୍ଡ ଦୃଢ଼ତା ଓ ଆତ୍ମାଭିମାନ । ଅଥଚ ଓଠରେ ଏପରି ଦୀନତା ! ମୁଁ ଭୁଲ ଶୁଣି ନାହିଁ ତ ? ମୁଁ ଲୋକଟିକୁ ଏକଲୟରେ ଚାହିଁ ରହିବା ଦେଖି ସେ ମୋ ଆଡ଼କୁ ତା ହାତକୁ ପ୍ରସାରିତ କରି ଆଣିଲା । ଦୀର୍ଘ ବଳିଷ୍ଠ ହାତ । ମାତ୍ର ଦଶଟି ପଇସା ପାଇ ସେ ହାତ ଲୋକଟିର ମସ୍ତକ ସ୍ପର୍ଶ କରି ମୋତେ 'ଆଦାବର୍ଜ' ଜଣାଇଲା ।

ଚାର୍‌ମିନାର୍ ହାଇଦରାବାଦ ସହରର ପ୍ରାଚୀନତମ ଅଞ୍ଚଳ । ଷୋଡ଼ଶ ଶତାବ୍ଦୀରେ ସୁଲତାନ ମହମ୍ମଦ କୁଲି ହାଇଦରାବାଦ ସହର ପ୍ରତିଷ୍ଠା କରିବା ସମୟରେ ହିଁ ଚାରମିନାର୍ ନିର୍ମିତ ହୋଇଥିଲା । ଚୂନ ଓ ପ୍ରସ୍ତରରେ ନିର୍ମିତ ଏହି ବିପୁଳ ସୌଧଟିର ପ୍ରତ୍ୟେକ ମିନାର୍‌ର ଉଚ୍ଚତା ଭୂମିଠାରୁ ୧୮୦ ଫୁଟ । ଏହାର ସାମଗ୍ରିକ ଆକୃତି ମୁସଲମାନମାନଙ୍କ ପବିତ୍ର 'ତାଜିଯା' ଅନୁରୂପ ।

ସହରଟିର ପ୍ରତିଷ୍ଠା କାଳରୁ ଭାରତର ସ୍ୱାଧୀନତା ଲାଭ ଯାଏଁ ହାଇଦରାବାଦ ବିଭିନ୍ନ ମୁସଲମାନ ଶାସକମାନଙ୍କ ଦ୍ୱାରାହିଁ ଶାସିତ ହୋଇ ଆସିଥିଲା । ତେଣୁ ସହରର ସମସ୍ତ ପ୍ରାଚୀନ କୀର୍ତ୍ତି ମୁସଲମାନ ଗୌରବର ସୂଚନା ଦିଏ । ଯେପରି ଗୋଲକୋଣ୍ଡା ଦୁର୍ଗ, ମକ୍‌କା ମସ୍‌ଜିଦ୍, ସାଲାର୍‌ଜଙ୍ଗ ମିଉଜିୟମ୍ ପ୍ରଭୃତି । ସମଗ୍ର ଭାରତରେ ମୁସଲମାନ ସଂସ୍କୃତି ଓ ଉର୍ଦ୍ଦୁ ଭାଷାର ଏକ ମୁଖ୍ୟ କେନ୍ଦ୍ର ହାଇଦରାବାଦ ଏବଂ ଚାର୍‌ମିନାର୍ ହାଇଦରାବାଦର ହୃତ୍‌ପିଣ୍ଡ ।

ଯେଉଁ ଚାର୍‌ମିନାର୍‌କୁ ମୁସଲମାନ ବାଦ୍‌ଶା ବା ନିଜାମମାନେ ମୁସଲମାନ ଐତିହ୍ୟ ଓ ସଂସ୍କୃତିର ପ୍ରତୀକ ରୂପେ ଗଢ଼ିଥିଲେ, ଆଜି ସେଠାରେ ଅଗଣିତ ମୁସଲମାନ ଭିକାରୀଙ୍କ ହାତ ଟୁରିଷ୍ଟମାନଙ୍କ ଆଗକୁ ଲମ୍ବି ଆସେ– । ସମୟ ଓ ଇତିହାସର ଏପରି ନିଷ୍ଠୁର ପରିହାସର ପଟାନ୍ତର ନାହିଁ । ଅଥଚ ସେ ହାତ ଦୁର୍ବଳ ନୁହେଁ । ଏକଦା ଉପମହାଦେଶର ଭାଗ୍ୟ ନିୟନ୍ତ୍ରଣ କରିଥିବା ସେଇ ହାତରେ ତଥାପି ରାଜଦଣ୍ଡର ଚିହ୍ନ ଲାଗି ରହିଛି ।

ଚାର୍‌ମିନାର୍‌ରେ ବୁଲୁଥିବା ସମୟରେ ଆଉ ଗୋଟିଏ କ୍ଷୀଣ ଗୌରବର୍ଣ୍ଣ ହାତ ପୁଣି ମୋ ଆଗକୁ ଲମ୍ବି ଆସିଲା । ଯଥାର୍ଥରେ ମୁଁ ବିମର୍ଷ ହେଲି, ଏ ହାତ ଯାହାର, ସେ କଳାବୁର୍ଖାରେ ସମ୍ପୂର୍ଣ୍ଣ ଆବୃତ ଥିଲା । ତା'ର ସ୍ୱର ବି ମୁଁ ଶୁଣି ପାରିନଥିଲି । x x x

ଚାର୍‌ମିନାର୍‌ରେ ଭିକାରୀମାନେ ମୋ ଭଳି ଟୁରିଷ୍ଟମାନଙ୍କ ପଥରୋଧ କରୁଥିବା ସମୟରେ, ରାଜପଥ ଉପରେ ଚାଲିଥିଲା ଆନ୍ଧ୍ର ସରକାରଙ୍କ ସଜ୍ଜିତ ଟ୍ରକ୍‌ମାନଙ୍କର ଶୋଭାଯାତ୍ରା– ଆନ୍ଧ୍ର ସରକାରଙ୍କ ବିଭିନ୍ନ ଦପ୍ତରରେ ବିପୁଳ କୃତିତ୍ୱର ପ୍ରଦର୍ଶନୀ । ସ୍ୱାଧୀନତା ଉତ୍ସବର ଆନନ୍ଦ, କୋଳାହଳ ଓ ଅଶ୍ଳୀଳତା ମଧ୍ୟରେ ଭିକାରୀମାନଙ୍କ ସ୍ୱର କ୍ଷୀଣ ହୋଇ ପଡ଼ିଥିଲା, ସେମାନେ ହୋଇପଡ଼ିଥିଲେ ଅଦୃଶ୍ୟ ।

କିନ୍ତୁ ଭାରତ ବର୍ଷର ସ୍ୱାଧୀନତା ଲାଭ ସହିତ ଚାର୍‌ମିନାର୍‌ର ଏଇ ଅସଂଖ୍ୟ ମୁସଲମାନ ଭିକାରୀମାନଙ୍କ ଦୁରବସ୍ଥା ସମ୍ପର୍କିତ, ଏହା ଆମେମାନେ ଭୁଲିଯିବାକୁ ଚେଷ୍ଟା କରିବା ଉଚିତ୍ ନୁହେଁ । ଧର୍ମ ଭିତ୍ତିରେ ଉପମହାଦେଶର ବିଭାଜନ ରାତାରାତି ହାଇଦରାବାଦ ତଥା ଭାରତର ମୁସଲମାନମାନଙ୍କୁ ପରିଣତ କରିଦେଲା ଦ୍ୱିତୀୟ ଶ୍ରେଣୀର ନାଗରିକରେ । ସ୍ୱାଧୀନତା ଲାଭ ପରେ ଭାରତ ସରକାର ଯେତେ ଉଚ୍ଚ ସ୍ୱରରେ ଧର୍ମ ନିରପେକ୍ଷ ନୀତି ଘୋଷଣା କଲେ ମଧ୍ୟ, ଧର୍ମ ଭିତ୍ତିରେ ଯେ ଭାରତ ଓ ପାକିସ୍ତାନ ରାଷ୍ଟ୍ର ଗଠିତ ହୋଇଛି– ମାତ୍ର ତେତିଶି ବର୍ଷ ତଳେ– ଏହା କିଏ ଅସ୍ୱୀକାର କରିପାରିବ ? ପୁଣି ଉପମହାଦେଶର ବିଭାଜନ ପରେ ଭାରତର ମୁସଲମାନମାନଙ୍କ ମନରେ ନିରାପତ୍ତାବୋଧର ଯେଉଁ ଅଭାବ ସୃଷ୍ଟି ହୋଇଛି, ତାହା କୌଣସି ସରକାରୀନାମା ଦୂର କରିପାରେ କି ?

ଭାରତ ଉପମହାଦେଶରେ ହିନ୍ଦୁ-ମୁସଲମାନ ସମ୍ପର୍କରେ ଇତିହାସ ଏକାନ୍ତ ଜଟିଳ ଓ ବିଭିନ୍ନ ଦିଗରୁ ତାହା ଆଲୋଚିତ ହୋଇପାରେ । ଏଠାରେ ଏଇ ସମ୍ପର୍କର ଗୋଟିଏ ଦିଗ ସମ୍ପର୍କରେ ପ୍ରଶ୍ନଟିଏ ମାତ୍ର ମୁଁ ଉତ୍‌ଥାପନ କରୁଛି ।

ଯେଉଁ ହାଇଦରାବାଦ ମୁସଲମାନ ଐତିହ୍ୟ ଓ ଗୌରବ ଉପରେ ପ୍ରତିଷ୍ଠିତ, ଇତିହାସର କେଉଁ ନିଷ୍ଠୁର ନିର୍ଦ୍ଦେଶ ସେଠାରେ ଅଧିକାଂଶ ମୁସଲମାନମାନଙ୍କୁ ଭିକାରୀରେ ପରିଣତ କରିଛି ? ହାଇଦରାବାଦର ଭାରତ ସହିତ ମିଶ୍ରଣ ପରେ ଏବଂ ହାଇଦରାବାଦ ଆନ୍ଧ୍ରପ୍ରଦେଶର ରାଜଧାନୀ ଘୋଷିତ ହେଲାପରେ ହାଇଦରାବାଦର ସ୍ଥାନୀୟ ଅଧିବାସୀମାନଙ୍କ ସ୍ୱାର୍ଥରକ୍ଷା ପାଇଁ କୌଣସି ବ୍ୟବସ୍ଥା କରାଯାଇଛି କି ? ପରିଣାମରେ ସ୍ୱାଧୀନତା ଲାଭର ତେତିଶି ବର୍ଷ ଭିତରେ ସେମାନଙ୍କ ସ୍ୱାର୍ଥ ଓ ପ୍ରତିପତ୍ତି କ୍ରମେ ସଙ୍କୁଚିତ ହୋଇଆସିଛି; ହାଇଦରାବାଦର ରାଜନୀତି, ଅର୍ଥନୀତି ଓ ସଂସ୍କୃତି ଉପରେ ହାଇଦରାବାଦର ସ୍ଥାନୀୟ ଅଧିବାସୀଙ୍କ ପ୍ରଭାବ ଦ୍ରୁତଗତିରେ ହ୍ରାସ ପାଇଛି । ହାଇଦରାବାଦର ଅଧିକାଂଶ ସ୍ଥାନୀୟ ମୁସଲମାନ ବସ୍ତିରେ ପଡ଼ିଛନ୍ତି କିମ୍ବା ଚାର୍‌ମିନାର୍‌ରେ ଭିକ ମାଗୁଛନ୍ତି । ଇତିହାସର ଏହି ଘୋର ଦୁର୍ଦ୍ଦିନରେ କିନ୍ତୁ ସେମାନଙ୍କ ଦୃଢ଼ତା ଓ ଆତ୍ମାଭିମାନ ଅନେକାଂଶରେ ଅକ୍ଷୁର୍ଣ୍ଣ ଅଛି । ମୁସଲମାନ ଐତିହ୍ୟ ଓ ଗୌରବ ସମ୍ପର୍କରେ ସଚେତନତା ହିଁ ଏହାର କାରଣ ।

**ଛାତ୍ର ଆନ୍ଦୋଳନ ଓ ଓଡ଼ିଆ ଅକ୍ଷର ଶିକ୍ଷା**

ସ୍ଥାନ ରେଢ଼ାଖୋଲ । ସମୟ ସନ୍ଧ୍ୟା ପାଞ୍ଚଟା । ୩ ଫେବୃୟାରୀ ୧୯୮୧ । ସମ୍ବଲପୁରରୁ ଭୁବନେଶ୍ୱର ଫେରିବା ବାଟରେ ଚା' ଖାଇବା ପାଇଁ ଗୋଟିଏ ଦୋକାନରେ ଅଟକିଲୁ ମୁଁ ଓ ମୋର କେତେଜଣ ବନ୍ଧୁ ।

ଦୋକାନର ପଞ୍ଜାବୀ ମାଲିକ ଦୋକାନର ପ୍ରବେଶ ଦ୍ୱାରରେ ଚୁପ୍‌ଚାପ୍ ବସି ଗମ୍ଭୀର ଏକାଗ୍ରତା ସହକାରେ କିଛି ଗୋଟାଏ ଲେଖୁଥିଲେ । ବିଶାଳ ପଞ୍ଜାବୀ ଚେହେରା, ମୁହଁରେ କିପରି ଗୋଟାଏ ଉଗ୍ରତା, ଦେଖିଲେ ଭୟ ଲାଗେ । ପାଖକୁ ଯାଇ ଦେଖିଲି, ଗୋଟିଏ ହସ୍ତାକ୍ଷର ଖାତାରେ ସେ ଓଡ଼ିଆ ଅକ୍ଷର 'କ' 'ଖ' ମଡାଉଛନ୍ତି । ଆମୋଦିତ ହେଲି । 'ଓଡ଼ିଆ ଲେଖୁଛନ୍ତି ?' ପଚାରିଲି । ସେ ହସିଲେ । କିଛି କହିଲେ ନାହିଁ ।

ବିଗତ କେତେ ମାସ ହେଲା ପଶ୍ଚିମ ଓଡ଼ିଶାରେ ଲାଗି ରହିଥିବା ଆନ୍ଦୋଳନ ପରିପ୍ରେକ୍ଷୀରେ ଏଇ ସାମାନ୍ୟ ଘଟଣାଟି ଅର୍ଥପୂର୍ଣ୍ଣ ମନେହୁଏ । ଓଡ଼ିଶା ବିଶେଷତଃ ପଶ୍ଚିମ ଓଡ଼ିଶାରେ ବ୍ୟବସାୟ ବାଣିଜ୍ୟ ଓ ଅନ୍ୟ ଉଦ୍ଦେଶ୍ୟରେ ବହୁ ଅଣଓଡ଼ିଆ ବ୍ୟକ୍ତି ବହୁ ବର୍ଷ ହେଲା ବାସ କରି ଆସୁଛନ୍ତି । ଓଡ଼ିଶା ଓ ଓଡ଼ିଆ ଜନସାଧାରଣଙ୍କ ସାହାଯ୍ୟ ସହଯୋଗରେ ସେମାନେ ବିପୁଳ ଲାଭବାନ୍ ହୋଇଛନ୍ତି । କିନ୍ତୁ ଓଡ଼ିଆ

ଭାଷା, ସାହିତ୍ୟ ଓ ସଂସ୍କୃତି ସମ୍ପର୍କରେ ମୋଟାମୋଟି ରହିଛନ୍ତି ବୀତସ୍ପୃହ। ରେଢ଼ାଖୋଲର ପଞ୍ଜାବୀ ଦୋକାନୀ ଭଳି ଅନ୍ୟାନ୍ୟ ଅଣଓଡ଼ିଆ ବ୍ୟବସାୟୀଗଣ ଓଡ଼ିଆ ଭାଷା ଓ ସଂସ୍କୃତି ପ୍ରତି ସମ୍ମାନ ଦେଖାଇବାକୁ ଶିଖିଥିଲେ ହୁଏତ ପଶ୍ଚିମ ଓଡ଼ିଶାରେ ଛାତ୍ର ଆନ୍ଦୋଳନ ଏତେ ଉଗ୍ର ହୋଇ ନଥାନ୍ତା।

## ବିଶ୍ୱବିଦ୍ୟାଳୟ କୋଠାବାଡ଼ି ନୁହେଁ

'ବିଶ୍ୱବିଦ୍ୟାଳୟ କହିଲେ କେବଳ କୋଠାବାଡ଼ିକୁ ବୁଝାଏ ନାହିଁ ସତ, କିନ୍ତୁ ବିଶ୍ୱବିଦ୍ୟାଳୟ ମଧ କୋଠାବାଡ଼ି।' ଜ୍ୟୋତିବିହାରରେ ଜଣେ ଅଧ୍ୟାପକ ବନ୍ଧୁ ଦୁଃଖରେ ସେଦିନ ଏଇ ମନ୍ତବ୍ୟ ଦେଇଥିଲେ।

ଜ୍ୟୋତିବିହାର ସମ୍ବଲପୁର ବିଶ୍ୱବିଦ୍ୟାଳୟର ନବନିର୍ମିତ କ୍ୟାମ୍ପସ୍। ପ୍ରଥମ ଥର ପାଇଁ ସେଇ କ୍ୟାମ୍ପସ୍ ଦେଖିବାର ସୁଯୋଗ ମିଳିଲା ଅଳ୍ପଦିନ ତଳେ। କୌଣସି ଗୋଟିଏ ଡିପାର୍ଟମେଣ୍ଟର ଜଣେ ବନ୍ଧୁଙ୍କୁ ସାକ୍ଷାତ କରିବାକୁ ଯାଇ ଦେଖିଲି, ଛୋଟ ଛୋଟ ଛଅ ସାତଟା ବଖରାକୁ ନେଇ ତାଙ୍କର ଡିପାର୍ଟମେଣ୍ଟ। ବାରଣ୍ଡା ପ୍ରଶସ୍ତ ନୁହେଁ। କୋଠରୀ ଗୁଡ଼ିକ ନିର୍ମାଣପଦ୍ଧତିରୁ କୌଣସି ମାର୍ଜିତ ରୁଚିର ସୂଚନା ମିଳୁ ନାହିଁ। କୌଣସି ପ୍ରକାରେ ଇଟା କାନ୍ଥ ଉପରେ ଢଳେଇ ଛାତ ଖଣ୍ଡେ ପକାଇ ଚୂନ ବୋଳି ଦିଆଯାଇଛି ଓ ତାହା ହିଁ ଗୋଟିଏ ନୂତନ ବିଶ୍ୱବିଦ୍ୟାଳୟର ନୂତନ ସ୍ନାତକୋତ୍ତର ବିଭାଗ।

ବନ୍ଧୁ କହି ଚାଲିଥିଲେ, 'ଶୁଣୁଛି ସମ୍ବଲପୁର କଲେକ୍ଟରେଟ୍ ବହୁ ଖର୍ଚ୍ଚରେ ଖୁବ୍ ଭଲ ଭାବରେ ତିଆରି ହେଉଛି। କିନ୍ତୁ ବିଶ୍ୱବିଦ୍ୟାଳୟର ଡିପାର୍ଟମେଣ୍ଟ ଗୁଡ଼ିକର କୋଠରୀସବୁ ନିହାତି unimpressive। ଆଗେ ଇଂରେଜମାନେ ଆମର ସ୍କୁଲ କଲେଜଗୁଡ଼ିକ ଖୁବ୍ impressive ଭାବରେ ତିଆରି କରୁଥିଲେ। ସେପରି ସ୍କୁଲ ଓ କଲେଜମାନଙ୍କରେ ପଢ଼ିଲେ ମନରେ ସ୍ୱାଭାବିକ ଗର୍ବ ଆସୁଥିଲା। ସରକାରୀ ଅଫିସଗୁଡ଼ିକ ହୁଏତ ଇଂରେଜମାନେ ତିଆରି କରୁଥିଲେ ସାଧାସିଧା। କିନ୍ତୁ ସ୍ୱାଧୀନତା ପରେ ଠିକ୍ ଓଲଟା ହେଉଛି। ସରକାରୀ କୋଠାବାଡ଼ି ପାଇଁ ଖର୍ଚ୍ଚ ହେଉଛି ଅଜସ୍ର ଅର୍ଥ। ସ୍କୁଲ, କଲେଜ, ବିଶ୍ୱବିଦ୍ୟାଳୟର କୋଠାବାଡ଼ି ଯେପରି ହେଲେ ଚଳିଯିବ ବୋଲି ଅନେକଙ୍କ ମନରେ ଧାରଣା ସୃଷ୍ଟି ହୋଇଛି।'

ବନ୍ଧୁ ଠିକ୍ କହୁଥିଲେ। ଶିକ୍ଷାର ଉପଯୁକ୍ତ ପରିବେଶ ସୃଷ୍ଟି କରିବା ପାଇଁ ଶିକ୍ଷାୟତନ ଗୁଡ଼ିକୁ ଖୁବ୍ ଭଲ ଭାବରେ ନିର୍ମାଣ କରାଯିବା ଉଚିତ୍। ଶିକ୍ଷା ଓ

ଗବେଷଣା ଯେ ଜାତୀୟ ପ୍ରଗତିର ମୂଳକେନ୍ଦ୍ର, ଏହା ଶିକ୍ଷାୟତନର ଗଠନ ରୀତିରେ ହିଁ ସୂଚିତ ହେବା ଆବଶ୍ୟକ । ସ୍ଥାପତ୍ୟ ବା architecture ମଣିଷର ମନ ଓ ଚରିତ୍ରକୁ ବେଶ୍ ପ୍ରଭାବିତ କରେ । ବିଶ୍ୱବିଦ୍ୟାଳୟର ପ୍ରଫେସର୍‌ଙ୍କ ରୁମ୍ ତୁଳନାରେ ବି.ଡ଼ି.ଓ.ଙ୍କ ଅଫିସ ଗୃହଟିର ନିର୍ମାଣ ପାଇଁ ଯଦି ଅଧିକ ସରକାରୀ ଅର୍ଥ ଓ ଶକ୍ତି ପ୍ରୟୋଗ କରାଯାଏ, ତେବେ ସ୍ୱୀକାର କରିବାକୁ ହେବ, ଶିକ୍ଷା ଓ ଗବେଷଣା ଅପେକ୍ଷା ଅମଲାତନ୍ତ୍ରକୁ ଆମେ ଅଧିକ ଗୌରବମୟ ସ୍ଥାନ ଦେବାରେ ବିଶ୍ୱାସ କରୁ । ❐

(୧୯୮୧)

# ନିମନ୍ତ୍ରଣ ପାଇଁ ଅପେକ୍ଷା

ହାଓଡା ଷ୍ଟେସନ୍‌ରେ ସେମାନେ ଆସି ମୋ ସାମନା ବର୍ଥରେ ବସିଲେ– ଜଣେ ମଧ୍ୟବୟସ୍କା ମହିଳା, ଜଣେ ତରୁଣୀ । ସେମାନଙ୍କ ବ୍ୟବହାର ଓ କଥାଭାଷାରୁ ମୂଳରୁ ବୁଝି ହେଉଥିଲା ସେମାନଙ୍କ ସମ୍ପର୍କ । ସେମାନେ ଥିଲେ ମାଆ ଓ ଝିଅ । ଅଳ୍ପ କେତେ ମିନିଟ୍ ପରେ ସେମାନଙ୍କ ସହିତ ଯୋଗ ଦେଲେ କେହି ଜଣେ ଭଦ୍ରବ୍ୟକ୍ତି– ତାଙ୍କ ବୟସ ଅନୁମାନ କରିବା କଠିନ ଥିଲା । ସାମାନ୍ୟ ସ୍ଥୁଳକାୟ– ଏଇ ମାତ୍ର ଯେମିତି ତାରୁଣ୍ୟ ଅତିକ୍ରମ କରିସାରିଛନ୍ତି ! ସେ ଦିଶୁଥିରେ ହସହସ– ମାଆ ଓ ଝିଅଙ୍କ ମଧ୍ୟରେ ବସିଲେ ଓ ଝିଅଟି ସଙ୍ଗେ ଥଟ୍ଟା-ପରିହାସ ଆରମ୍ଭ କରିଦେଲେ । ଝିଅଟି ସଙ୍ଗେ କ'ଣ ଥିଲା ତାଙ୍କ ସମ୍ପର୍କ- ସେ କ'ଣ ଥିରେ ଝିଅଟିର- କାକା, ଭିଣୋଇ ନା ଭାଇ ? କିଛି ସମୟ ପରେ ସେ ଝିଅଟି ପାଇଁ ଚକୋଲେଟ୍ ବାର୍‌ଟିଏ କିଣିଲେ– ଝିଅଟି ସେଥିରୁ କିଛି କାମୁଡ଼ି ଖାଇଲା । ଅବଶିଷ୍ଟାଂଶ ଖାଇଲେ ସେ ଭଦ୍ରବ୍ୟକ୍ତି । ମଧ୍ୟବୟସ୍କା ମହିଳା ହସୁଥାନ୍ତି କେବଳ ।

ଟ୍ରେନ୍ ହାଓଡା ଷ୍ଟେସନ୍ ଛାଡନ୍ତେ ଭଦ୍ରବ୍ୟକ୍ତି ଓହ୍ଲାଇଗଲେ । ବର୍ଥରେ ବସିରହିଲେ ମାଆ ଓ ଝିଅ । ମାଆ ଦିଶୁଥାନ୍ତି ସାମାନ୍ୟ ଚିନ୍ତିତ । ଝିଅଟି ହସହସ । ଝିଅ ହାତରେ ହିନ୍ଦୀ ପତ୍ରିକା– ମଧୁର କହାନୀୟାଁ । କଥାବାର୍ତ୍ତା ହିନ୍ଦୀରେ । ଝିଅ ମଝିରେ ମଝିରେ ଚକୋଲେଟ୍ ଖାଉଥାଏ; ମାଆଙ୍କୁ ପଚାରୁଥାଏ ରାଶିଫଳ– ପତ୍ରିକାଟି ପଢ଼ି ମାଆଙ୍କୁ ଶୁଣାଉଥାଏ ଆସନ୍ତା ସପ୍ତାହରେ ତାଙ୍କର ଭାଗ୍ୟ ।

ରାଜଧାନୀ ଏକ୍‌ସ୍‌ପ୍ରେସ୍ ଚାଲିଥାଏ ଦିଲ୍ଲୀ । ବର୍ତ୍ତମାନ ସମୟ ସନ୍ଧ୍ୟା । ଦିଲ୍ଲୀ ଅନେକ ଦୂର –ପହଞ୍ଚୁ ପହଞ୍ଚୁ ଆସନ୍ତା କାଲି ସକାଳ ଦଶଟା ।

ସେମାନେ ବସିଥିଲେ ଠିକ୍ ମୋ ସାମ୍‌ନାରେ- ଅଥଚ ପରଦିନ ସକାଳ ଯାଏଁ ଆମର କୌଣସି କଥାଭାଷା ହୋଇନଥିଲା । ପରଦିନ କିନ୍ତୁ ଆମର କଥାବାର୍ତ୍ତା । ଭଦ୍ର ମହିଳା ମୋତେ ଯାହା କହିଥିଲେ, ଏହା ଏହିପରି:

ସେମାନେ ରହନ୍ତି ଦିଲ୍ଲୀରେ- ମୂଳରୁ ଦିଲ୍ଲୀରେ ହିଁ ରହି ଆସିଛନ୍ତି । ଅବଶ୍ୟ ତାଙ୍କ ପିତା ମାତା ଦେଶ ବିଭାଜନ ବେଳେ ପଳାଇ ଆସିଥିଲେ ପାକିସ୍ତାନ୍‌ରୁ । ତେବେ ସେ ତ ପୁରୁଣା କଥା । ତାଙ୍କ ସ୍ୱାମୀ ସିନ୍ଧୀ, ସେ ନିଜେ ପଞ୍ଜାବୀ । ଘରେ ମୋଟାମୋଟି ହିନ୍ଦୀ ହିଁ କହନ୍ତି, କେବେ କେବେ ସିନ୍ଧୀ, ପଞ୍ଜାବୀ ।

ଝିଅଟିର ବୟସ ଅଠର; ପଢ଼େ ଦଶମ ଶ୍ରେଣୀରେ । ସେ କଲିକତା ଆସିଥିଲେ ବରପାତ୍ରଟିଏର ସନ୍ଧାନରେ । ଟ୍ରେନ୍‌ରେ ଯେଉଁ ଭଦ୍ରବ୍ୟକ୍ତି ତାଙ୍କୁ ଛାଡିବାକୁ ଆସିଥିଲେ, ତାଙ୍କ ସହିତ ଝିଅଟିର ବିବାହ ସ୍ଥିର ହୋଇଛି । ଭଦ୍ରବ୍ୟକ୍ତି ଜଣେ ଧନୀ ବ୍ୟବସାୟୀ ହାଓଡାରେ । କିନ୍ତୁ ବୟସ ଟିକିଏ ଅଧିକ ହୋଇଯାଇଛି– ତା' ଛଡା ସେ ଦେଖିବାକୁ ଏତେ ସୁନ୍ଦର ନୁହନ୍ତି । ସେଥିପାଇଁ ଝିଅର ମାମୁଁମାନେ (ସେମାନେ ଦିଲ୍ଲୀରେ ରହନ୍ତି) ଏଇ ବିବାହରେ ସମ୍ମତ ନୁହନ୍ତି । କିନ୍ତୁ ସେ ଚାହାନ୍ତି, ଶୀଘ୍ର ବିବାହ ସାରିଦେବାକୁ ।

ତାଙ୍କ ସ୍ୱାମୀ ଦିଲ୍ଲୀରେ ଠିକ୍ ଷ୍ଟେସନ୍ ନିକଟରେ ଟ୍ରାଭଲ୍ ଏଜେନ୍‌ସିଟିଏ ଖୋଲିଥିଲେ– ଭଲ ବ୍ୟବସାୟ ଚାଲିଥିଲା । କିନ୍ତୁ ଗତ ବର୍ଷ ସେ ମରିଗଲେ କିଡ୍‌ନି ରୋଗରେ– ଅକାଳରେ । ତାଙ୍କର ଗୋଟିଏ ବୋଲି ଝିଅ । ସେ ଚାହାନ୍ତି- ଝିଅଟିକୁ ବିବାହ କରିଦେବେ । ତାଙ୍କର ଭୟ- କାଳେ ତାଙ୍କର ବି କିଛି ହୋଇଯିବ ।

'ତୁମର ଏ ବିବାହରେ ସମ୍ମତି ଅଛି କି ?'– ମୁଁ ଝିଅକୁ ପଚାରିଲି ।

'ମମ୍‌ମି ଯାହା ଠିକ୍ କରିବେ, ସେଥିରେ ମୋର ସମ୍ମତି'– ପୂର୍ବରୁ ପ୍ରସ୍ତୁତ ଥିବା ପରି ସେ କହିଲା ଓ ମଧୁର କହାନୀୟାଁ ପଢ଼ିବାରେ ଲାଗିଲା । ସେ ଦିଶୁଥିଲା ହସହସ । ତା ମାଆ କିନ୍ତୁ ତଥାପି ଦିଶୁଥିଲେ ଚିନ୍ତିତ ।

'ଝିଅ ପାଇଁ ଆପଣ ଦିଲ୍ଲୀରେ ବରପାତ୍ରଟିଏ ନ ଖୋଜି ହାଓଡା ଆସିଲେ କାହିଁକି ?'– ଭଦ୍ରମହିଳାଙ୍କୁ ମୋର ପ୍ରଶ୍ନ ।

'ନିଜ ଲୋକମାନଙ୍କ ସଙ୍ଗେ ସମ୍ପର୍କ ନରଖିବା ଭଲ । ଆମେ ସିନ୍ଧୀ, କିନ୍ତୁ ମୋର ଜୋଇଁ ହେବାକୁ ଯାଉଛନ୍ତି ଜଣେ ମାରଓ୍ୱାଡୀ ।' – ସେ କହିଲେ । ନିଜ ଲୋକଙ୍କ ସହିତ କିଛି ତୀକ୍ତ ସମ୍ପର୍କ ହୁଏତ ତାଙ୍କୁ ଏପରି ମତପୋଷଣ ପାଇଁ ବାଧ କରିଥିଲା ।

ଦିଲ୍ଲୀରେ ପହଞ୍ଚିଲା ବେଳକୁ ଆମର ପରସ୍ପର ସହିତ ପରିଚୟ ହୋଇ ସାରିଥିଲା । ମୁଁ ମଧ ତାଙ୍କୁ କହି ସାରିଥିଲି– ମୋ ପୁଅର ବିବାହ ସରିଚି ଏଇ ମାତ୍ର । ସେ ସସ୍ତ୍ରୀକ ଦିଲ୍ଲୀରେ ରହୁଚି ଓ ପୁଅ- ବୋହୂଙ୍କୁ ଦେଖିବା ପାଇଁ ମୁଁ ଆସିଚି ଦିଲ୍ଲୀ ।

ଆମେ ପରସ୍ପରଠାରୁ ବିଦାୟ ନେଲାବେଳେ ମୁଁ ତାଙ୍କୁ ମୋ ଭିଜିଟିଂ କାର୍ଡ଼ଟି ଦେଲି । ସେମାନେ କେବେ ଓଡ଼ିଶା ଆସିନାହାନ୍ତି । ସେମାନଙ୍କୁ ଓଡ଼ିଶା ଆସିବା ପାଇଁ ନିମନ୍ତ୍ରଣ ଜଣାଇଲି । କହିଲି- ଝିଅର ବାହାଘର ହେଲେ ମୋ ନିକଟକୁ ନିମନ୍ତ୍ରଣ କାର୍ଡ୍ ପଠାଇବେ । ମାଆ ଓ ଝିଅ ଆଗ୍ରହରେ ସମ୍ମତ ହେଲେ ।

ସେମାନଙ୍କ ନିମନ୍ତ୍ରଣ କାର୍ଡ୍ ପାଇଁ ତଥାପି ମୁଁ ଅପେକ୍ଷା କରୁଛି । ❐

(୨୦୦୦)

# ମୋ ନାଁଆ ମଦନଲାଲ ଶର୍ମା, ବାବୁଜୀ

*(ମାର୍ଚ୍ଚ ୪, ୧୯୯୬ରେ ଉତ୍କଳ ଏକ୍ସପ୍ରେସ୍ ସେକେଣ୍ଡ କ୍ଲାସ ଏ.ସି.ସ୍ଲିପରରେ ଦିଲ୍ଲୀରୁ ଭୁବନେଶ୍ୱର ଫେରିବା ସମୟରେ ତା' ସହିତ ପରିଚୟ ଓ କଥାବାର୍ତ୍ତା । ଆପଣ ମଧ୍ୟ ହୁଏତ ତାକୁ ଭେଟିଥାଇପାରନ୍ତି । ନିଜ ସମ୍ପର୍କରେ ସେ ଯାହା କହିଥିଲା, ମୋଟାମୋଟି ତାହା ଏଠାରେ ଉଦ୍ଧାର କରୁଛି ।)*

ମୋ ଘର ମଧ୍ୟପ୍ରଦେଶର ଦୁର୍ଗ ଜିଲ୍ଲା । ଏଇ ଟ୍ରେନ୍‌ରେ ବାବୁମାନଙ୍କୁ କମ୍ବଳ, ବିଛଣାଚାଦର ଓ ତକିଆ ଖୋଳ ଯୋଗାଇଦେବା ମୋର କାମ । ବାବୁମାନେ ଟ୍ରେନ୍‌ରେ ଚଢ଼ିଲେ ସେମାନଙ୍କୁ ଏଇ ସବୁ ଯୋଗାଇଦିଏ; ସେମାନେ ଷ୍ଟେସନ୍‌ରେ ଓହ୍ଲାଇଗଲେ ସେସବୁ ସଂଗ୍ରହ କରିନିଏ । ଏମିତି ମୁଁ କରିଆସୁଛି ଦୁଇବର୍ଷ ହେଲା ।

ମୋର ଦରମା ଏକ ହଜାର ଟଙ୍କା, ବାବୁଜୀ । କିନ୍ତୁ ମୋର କାମ ବଡ କଠିନ । ରାତିରେ କେବେ ଶୋଇପଡିବାର ସୁବିଧା ନାହିଁ । ବାବୁମାନେ ଯେ କୌଣସି ଷ୍ଟେସନ୍‌ରେ ଉଠିପାରନ୍ତି । ଉଠିଲେ ପ୍ରଥମେ ମୋତେ ହିଁ ଖୋଜିବେ । ସେମାନଙ୍କ ଆରାମ ପାଇଁ ମୁଁ ଚାକିରୀ କରିଛି । ନିଜେ ଶୋଇପଡିବି କିପରି ?

ମୋର ପ୍ରାଇଭେଟ୍ ଚାକିରୀ, ରେଲୱେ ଚାକିରୀ ନୁହେଁ । ମୋ ମାଲିକ ଦିଲ୍ଲୀରେ ରହନ୍ତି । ମୁଁ ତାଙ୍କଠାରୁ କମ୍ବଳ, ବିଛଣାଚାଦର, ତକିଆଖୋଳ ଗୋଟି ଗୋଟି ଗଣିନିଏ । ଯଦି କିଛି ଗୋଟାଏ ହଜିଲା, ତେବେ ମୋ ଦରମାରୁ ପଇସା କଟାହୁଏ । ପ୍ରତିମାସରେ କିଛି ନା କିଛି ହଜିଯାଏ । ବାବୁମାନେ କେବେ କେବେ ଭୁଲରେ ବିଛଣାଚାଦର କି ତକିଆ ଖୋଳଟାଏ ନିଜ ବ୍ୟାଗରେ ନେଇଯାନ୍ତି । ସେମାନଙ୍କୁ ତ କିଛି କହିବା ସହଜ ନୁହେଁ । ବିପଦ ମୋ ଉପରେ । ମୋ ମାଲିକ ଖାଲି ଟଙ୍କା କାଟି ନେଉଥିଲେ ବାଧନ୍ତା ନାହିଁ । ଭୁଲ ତ ମୋର । ମୋତେ କିନ୍ତୁ ସେ କୁତ୍ସିତ ଭାଷାରେ ଗାଳି ଗୁଲଜ କରନ୍ତି । କିନ୍ତୁ କ'ଣ କରିବି ? ଚାକିରୀ ତ କରିଛି ।

ଦିଲ୍ଲୀରୁ ପୁରୀ ଲାଗେ ପ୍ରାୟ ତିରିଶି ଘଣ୍ଟା । ପୁରୀରେ ପହଞ୍ଚିଲେ ଗାଧୁଆ ପାଧୁଆ ଖିଆପିଆ ସାରି ପୁଣି ପ୍ରସ୍ତୁତ ହେବାକୁ ପଡେ ଦିଲ୍ଲୀ ଫେରିବା ପାଇଁ । ମଇଳା କମ୍ବଳ, ବିଛଣାଚାଦର, ତକିଆ ଖୋଳ ଗୋଟି ଗୋଟି ଗଣି ରଖି ସଫା କମ୍ବଳ ଇତ୍ୟାଦି ସହ ସଜାଗ ରହିବାକୁ ହୁଏ । ବିଶ୍ରାମ ମୋଟେ ନାହିଁ । ଦିନ ପରେ

ଦିନ ଏଇ କାମ । ବେଳେବେଳେ ମନେହୁଏ, ପାଗଳ ହୋଇଯିବି । ମୁଣ୍ଡ ଘୂରାଇଦେଉଛି । କିନ୍ତୁ କିଛି ଉପାୟ ନାହିଁ, ବାବୁଜୀ ।

ମୁଁ ଅଶିକ୍ଷିତ ନୁହେଁ । ବି.ଏ. ଯାଏଁ ପାଠ ପଢ଼ିଛି ଭାଗଲପୁର ବିଶ୍ୱବିଦ୍ୟାଳୟରେ । ନୂଆ ବାହା ହୋଇଛି । ମୋ ସ୍ତ୍ରୀ ଗାଁଆରେ ରହେ- ମଧ୍ୟପ୍ରଦେଶରେ । ଘରେ ମୋ ବାପା-ମା ଅଛନ୍ତି । ଏଥର ହୋଲିରେ ଗାଁଆକୁ ଯିବାକୁ ଭାବିଥିଲି । ମାଲିକ ଛୁଟିଦେଲେ ନାହିଁ । ଭାବୁଛି, ଏଥର ଗଲେ ଚାକିରୀ ଛାଡିଦେବି । ଆମ ସହରରେ ଘଣ୍ଟା ମରାମତି ଦୋକାନ କରିବି । ମୋ ଭାଇ ଘଣ୍ଟା ମରାମତି କାମ ଜାଣେ । ଦିଲ୍ଲୀରୁ ଘଣ୍ଟା ଓ ଅନ୍ୟାନ୍ୟ ଜିନିଷ ଆଣି ଆମ ସହରରେ ବିକ୍ରୀ କଲେ ବେଶ୍ ଲାଭ ମିଳିବ ।

ମୋ ସାଙ୍ଗେ ଆଉ ଜଣେ ବି ଏଇ କାମ କରେ– ସୁଖବୀର । ସେ ମଧ୍ୟ ବି.ଏ. ପଢ଼ିଛି । ତା'ଘର ରାଜସ୍ଥାନ । ଆମେ ଏଇ ଟ୍ରେନ୍‌ରେ ଏକାଠି କାମ କରୁଛୁ ।

ଆମ କଥା କେହି ବୁଝନ୍ତି ନାହିଁ । ଟ୍ରେନ୍‌ରେ କମ୍ବଳ, ତକିଆଖୋଳ ଯୋଗାଉଥିବା ଲୋକମାନଙ୍କର ଯେ ଗୋଟାଏ ଜୀବନ ଅଛି, ସୁଖ ସୁବିଧା ଅଛି, ଟ୍ରେନ୍‌ର ବାବୁମାନେ ଏହା ବୁଝନ୍ତି ନାହିଁ । ବାବୁମାନେ ଟ୍ରେନ୍‌ରେ ଚଢ଼ନ୍ତି ଓ ଓହ୍ଲାଇଯାଆନ୍ତି, ଆମେ କିନ୍ତୁ ସବୁବେଳେ ଟ୍ରେନ୍‌ରେ ହିଁ ଥାଉ । ଆପଣ ପୁଣି କେବେ ଟ୍ରେନ୍‌ରେ ଆସିଲେ ମୋତେ ଖୋଜିବେ, ବାବୁଜୀ । ମୋ ନାଁଆ ମଦନଲାଲ ଶର୍ମା । ❐

(୧୯୯୬)

# ଦୁଇଟି ରେଳଗପ

## ଶାଢ଼ୀ ସମ୍ବଲପୁରୀ

ରାଜଧାନୀ ଏକ୍ସ୍‌ପ୍ରେସ୍ ନୂଆଦିଲ୍ଲୀ ଷ୍ଟେସନ୍ ଛୁଇଁବାକୁ ଆଉ ଅଳ୍ପ ସମୟ ବାକି ଥାଏ । ଯାତ୍ରୀମାନେ ନିଜ ନିଜର ବ୍ୟାଗ୍ ଓ ସୁଟ୍‌କେଶ୍‌ସବୁ ପାଖରେ ଆଣି ରଖୁଥାନ୍ତି । ମୋ ବର୍ଥ୍ ସାମ୍‌ନାରେ ବସିଥିବା କୃଷ୍ଣକାୟ ତାମିଲ୍ ଯୁବକ ଜଣକ ଭୁବନେଶ୍ୱରରୁ ହିଁ ଆସିଥାନ୍ତି । ବର୍ତ୍ତମାନ ସେ ଅନ୍ୟ ବର୍ଥ୍‌ରେ ବସିଥିବା ଦୁଇଜଣ ମହିଳାଙ୍କୁ ନିଜ ସମ୍ପର୍କରେ କିଛି କହିଲେ– 'ଭୁବନେଶ୍ୱରରୁ ଆସିବା ଆଗରୁ ଗୋଟିଏ ସମ୍ବଲପୁରୀ ଶାଢ଼ୀ କିଣି ଆଣିଛି । ଅତି ସୁନ୍ଦର ଶାଢ଼ୀ । ଦିଲ୍ଲୀରେ ଏହାର ଡିମାଣ୍ଡ୍ ଖୁବ୍ । ମୋ ସ୍ତ୍ରୀ ଦିଲ୍ଲୀରେ ଗୋଟିଏ ପବ୍ଲିକ୍ ସ୍କୁଲ୍‌ରେ ପାଠ ପଢ଼ାନ୍ତି । ସେ କହୁଥିଲେ, ସମ୍ବଲପୁରୀ ଶାଢ଼ୀ ଆଣିଲେ ଅନ୍ୟ ଶିକ୍ଷୟିତ୍ରୀମାନେ କିଣିନେବେ । ତାହିଁଲେ କିଛି ଲାଭ ବି ହୁଅନ୍ତା । ମୁଁ କିନ୍ତୁ କହିଲି, ନା, ସେପରି କରିବା ଠିକ୍ ହେବନାହିଁ । ଦିଲ୍ଲୀରେ କିନ୍ତୁ ସମ୍ବଲପୁରୀ ଶାଢ଼ୀ ଖୋଜିଲେ ସହଜରେ ମିଳେ ନାହିଁ ।'

ସମ୍ବଲପୁରୀ ଶାଢ଼ୀର ପ୍ରଶଂସା ଶୁଣି ମହିଳା ଦୁଇଜଣ ଆନନ୍ଦିତ ଦେଖାଗଲେ । ସେମାନେ ଥିଲେ ଓଡ଼ିଆ । ଜଣେ ବୃଦ୍ଧା, ଜଣେ ତରୁଣୀ ।

'ସମ୍ବଲପୁରୀ ଶାଢ଼ୀର ଦାମ୍ କେତେ ହେବ କହିଲ ?' ପଚାରିଲେ ବୃଦ୍ଧା ଜଣକ ।

'ସେପରି ତ କହିବା ସହଜ ନୁହେଁ,'– ଆଲୋଚନାରେ ଯୋଗ ଦେଲେ ତରୁଣୀ– 'ପାଞ୍ଚ ହଜାର ଟଙ୍କା ହୋଇପାରେ; ପାଞ୍ଚ ଶହ ବି ହୋଇପାରେ ।'

'ମୁଁ କିଣିଥିବା ଶାଢ଼ୀର ଦାମ୍ କେତେ ହେବ ?'– ବର୍ତ୍ତମାନ ତାମିଲ ଯୁବକ ନିଜର ବ୍ୟାଗ୍ ଖୋଲି ଦେଖାଇଲେ ।

'ବେଶ୍ ସୁନ୍ଦର ହୋଇଚି'– କହିଲେ ବୃଦ୍ଧା ମହିଳା । 'ଚାରି ଶହ ହୋଇଥିବ ?'

'ନା-ନା'– କହିଲେ ଉଲ୍ଲସିତ ଯୁବକ– 'ମାତ୍ର ଅଢ଼େଇ ଶହ ।'

ବୃଦ୍ଧା ହସିଲେ । କହିଲେ, 'ଶସ୍ତା ହୋଇଚି । ଶାଢ଼ୀଟି ଦେଖିବାକୁ ବି ସୁନ୍ଦର । ଆପଣଙ୍କ ସ୍ତ୍ରୀ ପସନ୍ଦ କରିବେ ନିଶ୍ଚୟ । କିନ୍ତୁ ଏଇଟା ସମ୍ବଲପୁରୀ ଶାଢ଼ୀ ନୁହେଁ, ଏହା ବଙ୍ଗଳାରେ ତିଆରି ଶାନ୍ତିପୁରୀ । ଆପଣ ତନ୍ତୁଜାରୁ କିଣିଥିବେ ।'

ନୂଆଦିଲ୍ଲୀ ଷ୍ଟେସନ୍‌ରେ ବର୍ତ୍ତମାନ ଟ୍ରେନ୍ ଅଟକିଲା ।

# ଘର ବାହୁଡ଼ାର ଦୃଶ୍ୟ

ବାପା-ମାଆଙ୍କୁ ଦିଲ୍ଲୀ ଷ୍ଟେସନ୍‌ରେ ବିଦାୟ ଦେବାକୁ ଆସିଥିଲା ପୁଅ । ଗାଡି ଛାଡ଼ିବା ଆଗରୁ କମ୍ପାର୍ଟମେଣ୍ଟ ଭିତରକୁ ଆସି ମାଆଙ୍କ ପାଦ ଛୁଇଁଲା ଓ ତାପରେ ହାତ ଟେକି କହିଲା, ଟା-ଟା । ମାଆ କ'ଣ ସବୁ କହୁଥାନ୍ତି ଓଡ଼ିଆରେ– ପୁଅ କିନ୍ତୁ ଉତ୍ତର ଦେଉଥାଏ ହିନ୍ଦୀରେ ।

ଟ୍ରେନ୍ ଛାଡିବାର କିଛି ଘଣ୍ଟା ପରେ ବାପା-ମାଆଙ୍କ ସହିତ ମୋର ଆଳାପ ହେଲା । ସେମାନଙ୍କ ଘର ନୟାଗଡର ମଫସଲ ଗାଁଆରେ । ବର୍ଷକ ପରେ ଗାଁଆକୁ ଫେରୁଛନ୍ତି ସେମାନେ- ସେମାନଙ୍କ ପେଟି ଓ ଛୋଟ-ବଡ ବାକ୍ସସବୁ ଦଖଲ କରିନେଇଥାଏ ଆମ ପାଖ-ଆଖ ବର୍ଥ୍‌ଗୁଡିକର ତଳ । ଅନ୍ୟ ଯାତ୍ରୀମାନଙ୍କର ଅସୁବିଧା ପ୍ରତି ସେମାନଙ୍କର ନିଘା ନଥାଏ ।

ସେମାନଙ୍କ ବେଶଭୂଷା ମଫସଲି– ବାପା ଟିକିଏ ସ୍ମାର୍ଟ, ସଫାରୀ ପୋଷାକ; ବେକରେ ଝୁଲୁଥିବା ସନ୍ତକରୁ ଜଣାପଡୁଥାଏ– ଭାରତ ସରକାରଙ୍କ ପ୍ରତିରକ୍ଷା ବିଭାଗର ସେ ଜଣେ କର୍ମଚାରୀ । ପଚାଶ ପାଖେଇଲାଣି– ଆଉ କେତେ ମାସ ପରେ ଅବସର ନେବା କଥା ଚିନ୍ତା କରୁଛନ୍ତି ।

'ବର୍ଷକ ପରେ ଘରକୁ ଫେରୁଛୁ । ଘରଟା ନିହାତି ଅସନା ହୋଇଥିବ ।'– କହିଲେ ମାଆ ।

'ଦିଲ୍ଲୀରେ ଆମେ ରହିଲୁଣି ଅନେକ ବର୍ଷ । ଝିଅ ଦିଲ୍ଲୀ ପବ୍ଲିକ୍ ସ୍କୁଲରେ କାମ କରେ । ପୁଅ ପଢୁଚି କମ୍ପ୍ୟୁଟର୍ ।' କହିଲେ ବାପା ।

'କମ୍ପ୍ୟୁଟର୍ ପଢ଼ିବା ଭଲ । ସେଇଥିରେ ତ ଚାକିରୀ ମିଳିବ ।' କହିଲି ମୁଁ ।

ବାପା–ମାଆ ଦେଖାଗଲେ ଆନନ୍ଦିତ । କମ୍ପ୍ୟୁଟର୍ ପଢୁଛି ବୋଲି ପୁଅ ଆଜିଠୁ ମାତୃଭାଷା ଓଡ଼ିଆ ଛାଡି ହିନ୍ଦୀରେ କଥାବାର୍ତ୍ତା କଲାଣି । ଚାକିରୀ କଲାପରେ ବାପା-ମାଆଙ୍କୁ ଚିହ୍ନିବ ତ ? ଫେରିବ ତ ନିଜର ମଫସଲ ଗାଁଆକୁ ?– ମୁଁ ନିଜକୁ ନିଜେ ପଚାରିଲି । ❐

(୨୦୦୧)

# ଆସାମର କୁଲି ଓ
# ମେଘାଳୟର ପ୍ରଫେସର

ଭାରତ ସ୍ୱାଧୀନ ହେବା ପୂର୍ବରୁ ଓଡ଼ିଶାରୁ ହଜାର ହଜାର କୁଲି ଆସାମର ଚା' ବଗିଚାମାନଙ୍କରେ କାର୍ଯ୍ୟ କରିବାକୁ ଯାଉଥିଲେ । ସେମାନଙ୍କ ସଂଖ୍ୟା କେତେଥିଲା, ତାହାର ସଠିକ ବିବରଣୀ ନଥିଲେ ମଧ୍ୟ ଆସାମର ସାଂସ୍କୃତିକ ଜୀବନରେ ସେମାନଙ୍କ ପରିଚୟ ସ୍ପଷ୍ଟ ଥିଲା । ଆସାମର ଚା' ବଗିଚା ଅଞ୍ଚଳରେ ଆସାମ-ଓଡ଼ିଆ-ବଙ୍ଗଳାର ମିଶ୍ରଣରେ ଏକ ଉପଭାଷା ସୃଷ୍ଟି ହୋଇଥିଲା । ଆସାମର ରେଡ଼ିଓରେ କେବେକେବେ ଓଡ଼ିଆ ସଙ୍ଗୀତ, ବିଶେଷତଃ ଜଗନ୍ନାଥ ଭଜନ ଶୁଣିବାକୁ ମିଳୁଥିଲା । ଆସାମର ଓଡ଼ିଆ କୁଲିମାନଙ୍କ ସମ୍ପର୍କରେ ଓଡ଼ିଆରେ ଗଳ୍ପ-କବିତାମାନ ଲେଖାଯାଇଥିଲା ।

ସ୍ୱାଧୀନତା ପରେ ପରିସ୍ଥିତି ଅନେକାଂଶରେ ବଦଳିଗଲା । ଓଡ଼ିଶାରେ ଶିଳ୍ପ-ଉଦ୍ୟୋଗମାନ ପ୍ରତିଷ୍ଠିତ ହେବାରୁ ଓଡ଼ିଆ ଶ୍ରମଜୀବୀମାନେ ଓଡ଼ିଶାରେ କାର୍ଯ୍ୟ କରିବାର ସୁଯୋଗ ପାଇଲେ । ତଥାପି ଆସାମ, ବର୍ମା, ବାଂଲାଦେଶରେ ଅନେକ ଓଡ଼ିଆ ସ୍ଥାୟୀ ଭାବରେ ବାସିନ୍ଦା ହୋଇ ରହିଗଲେ । ଆଜି ହୁଏତ ଅନେକେ ଓଡ଼ିଆ ଭାଷା ଭୁଲିଗଲେଣି ।

ସ୍ୱାଧୀନତାର ପଚାଶ ବର୍ଷ ପରେ ତଥାପି ଓଡ଼ିଆମାନେ ଆସାମ ଯାତ୍ରା କରିବା ଆମେ ଲକ୍ଷ୍ୟ କରୁଛୁ– ଅବଶ୍ୟ ସେଦିନର ଆସାମ ଆଜି ଆସାମ, ମେଘାଳୟ, ଅରୁଣାଚଳ, ମିଜୋରାମ ଓ ନାଗାଲାଣ୍ଡରେ ବିଭକ୍ତ । ଏଇ ଅଞ୍ଚଳମାନଙ୍କରେ ଆଜି କୁଲି ଭାବରେ ନୁହେଁ, ଅଧ୍ୟାପକ ଭାବରେ ବହୁ ଓଡ଼ିଆ କାର୍ଯ୍ୟ କରୁଛନ୍ତି । ସେମାନଙ୍କ ସଂଖ୍ୟା ନିର୍ଦ୍ଦିଷ୍ଟ ଭାବରେ କହିବା ସମ୍ଭବ ନ ହେଲେ ମଧ୍ୟ ଆସାମର ଶିକ୍ଷା ଓ ସାଂସ୍କୃତିକ ଜୀବନରେ ସେମାନଙ୍କ ପ୍ରଭାବ ସ୍ପଷ୍ଟ ।

ନାଗାଲାଣ୍ଡର ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟର କୋହିମା କ୍ୟାମ୍ପସ୍‌ରେ ୧୯୮୧-୮୨ରେ ତିନୋଟି ସ୍ନାତକୋତ୍ତର ବିଭାଗ ଖୋଲିଥିଲା– ଶିକ୍ଷା, ଇଂରାଜୀ ଓ ବାଣିଜ୍ୟ । ଏହି ତିନୋଟି ବିଭାଗର ମୁଖ୍ୟମାନେ ଥିଲେ ଓଡ଼ିଆ । ପ୍ରୋ-ଚାନ୍‌ସେଲର୍ ମଧ୍ୟ ଥିଲେ ଜଣେ ଓଡ଼ିଆ । ବର୍ତ୍ତମାନ ଏହି ବିଶ୍ୱବିଦ୍ୟାଳୟର

ସିଲଂ କ୍ୟାମ୍ପସ୍‌ର ଦୁଇ ଶହ ଅଧ୍ୟାପକ-ଅଧ୍ୟାପିକାଙ୍କ ମଧ୍ୟରୁ ପ୍ରାୟ ଦଶ ଜଣ ଓଡ଼ିଆ । ସେମାନଙ୍କ ମଧ୍ୟରେ ଅଛନ୍ତି ପ୍ରଫେସର, ବିଭାଗୀୟ ମୁଖ୍ୟ ଓ ସିଣ୍ଡିକେଟ୍ ସଭ୍ୟ । ଆସାମ ଓ ଅନ୍ୟାନ୍ୟ ଉତ୍ତର-ପୂର୍ବ ରାଜ୍ୟମାନଙ୍କରେ ଓଡ଼ିଆ ଅଧ୍ୟାପକଙ୍କ ସଂଖ୍ୟା ନିଶ୍ଚିତ ଭାବରେ ଉଲ୍ଲେଖଯୋଗ୍ୟ ।

୧୯୩୬ରେ ଓଡ଼ିଆମାନଙ୍କ ପାଇଁ ସ୍ୱତନ୍ତ୍ର ପ୍ରଦେଶ ସୃଷ୍ଟିହେବା ପରେ ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟକ୍ରମ ବିଶେଷତଃ ଶିକ୍ଷାର ବିକାଶ ଫଳରେ ବହୁ ଶିକ୍ଷିତ ଓଡ଼ିଆ ଅଧ୍ୟାପନା ଓ ଅନ୍ୟାନ୍ୟ ନିଯୁକ୍ତିରେ ଓଡ଼ିଶା ବାହାରେ କାର୍ଯ୍ୟ କରିବାର ସୁଯୋଗ ପାଉଛନ୍ତି । ଯୁକ୍ତରଷ୍ଟ୍ର ଆମେରିକାରେ ଆଜି କମ୍ପ୍ୟୁଟର ଇଞ୍ଜିନିୟର, ଡାକ୍ତର, ଅଧ୍ୟାପକ, ବୈଜ୍ଞାନିକ ଭାବରେ ବହୁ ଓଡ଼ିଆ ପ୍ରତିଷ୍ଠିତ । ଏକହଜାରରୁ ଅଧିକ ଓଡ଼ିଆ ପରିବାର ଆମେରିକା ଓ କାନାଡାରେ ବସବାସ କରୁଛନ୍ତି । ସେମାନଙ୍କର The Oriya Society of the Americas ବା OSA ନାମରେ ଅନୁଷ୍ଠାନଟିଏ ଅଛି । ନାସଭିଲଠାରେ ଓଡ଼ିଆମାନେ ଜଗନ୍ନାଥଙ୍କ ମନ୍ଦିର ସ୍ଥାପନକରି ପ୍ରତିବର୍ଷ ରଥଯାତ୍ରା ଉତ୍ସବ ପାଳନ କରୁଛନ୍ତି ।

ଗତିଶୀଳତା ଯେକୌଣସି ଜାତିର ଆର୍ଥନୀତିକ ତଥା ସାମାଜିକ ଅଭ୍ୟୁତ୍‌ଥାନର ଗୋପନ ରହସ୍ୟ । ଗତିଶୀଳତା ପାଇଁ ଇଂରେଜମାନେ ଆଜି କ୍ଷୁଦ୍ର ଇଂଲଣ୍ଡ ଦ୍ୱୀପ ବାହାରେ ସମଗ୍ର ପୃଥିବୀରେ ବିସ୍ତାରିତ । ସେମାନଙ୍କ ଭାଷା, ସାହିତ୍ୟ ଓ ସଂସ୍କୃତିକୁ ସମଗ୍ର ପୃଥିବୀ ଗ୍ରହଣ କରିନେଇଛି । ଓଡ଼ିଆମାନେ ଇଂରେଜମାନଙ୍କ ଇତିହାସରୁ କିଛି ଶିକ୍ଷା କରିବାର ଅଛି ନିଶ୍ଚୟ । ❐

(୧୯୯୯)

# ଓଡ଼ିଶା ଓ କଳାପାଣି

ଓଡ଼ିଶାରେ 'କଳାପାଣି' ନାମଟି ବେଶ୍ ପରିଚିତ। ହୁଏତ ୧୮୭୯ ମସିହାରେ ଓଡ଼ିଆମାନେ ପ୍ରଥମ ଥର ପାଇଁ ଏହି ନାମଟି ଶୁଣିଥିବେ। କାରଣ ଏହି ବର୍ଷ ଓଡ଼ିଶାର ଗଜପତି ରାଜା ବୀର କେଶରୀ ଦେବଙ୍କୁ କୌଣସି କାରଣରୁ ଇଂରେଜ ସରକାର କଳାପାଣି ଦ୍ୱୀପରେ ନିର୍ବାସିତ କରିଥିଲେ। ସେଠାରୁ ସେ ଆଉ ଫେରିନଥିଲେ, ସେଠାରେ ତାଙ୍କର ମୃତ୍ୟୁ ହୋଇଥିଲା।

ସେଇ କଳାପାଣିଟି କେଉଁଠି-ଏହା ହୁଏତ ଅନେକ ଜାଣନ୍ତି ନାହିଁ। କିନ୍ତୁ କଳାପାଣି କହିଲେ ସମସ୍ତଙ୍କ ମନରେ ମୋଟାମୋଟି ଧାରଣା ହୁଏ-ଶହଶହ ମାଇଲ ଦୂରରେ, ବିଶାଳ ସମୁଦ୍ର ମଧ୍ୟରେ, ଘୋର ଜଙ୍ଗଲରେ ଭର୍ତ୍ତି ଦ୍ୱୀପଟିଏ- ଯେଉଁଠାରେ ଥରେ ପହଞ୍ଚିଲେ ଆଉ ଫେରିବାର ଆଶା ନଥାଏ। ଓଡ଼ିଶାର ଗଜପତି ତ ସେଠାରୁ ଆଉ ଫେରିନଥିଲେ।

ଗତ ଏପ୍ରିଲ୍ ମାସରେ କଳାପାଣି ଦର୍ଶନର ସୁଯୋଗ ଘଟିଲା। କଳାପାଣିର ବର୍ତ୍ତମାନ ନାମ-ଆଣ୍ଡାମାନ ନିକୋବର ଦ୍ୱୀପପୁଞ୍ଜ। କଲିକତାରୁ ଦୂରତା ୧୨୫୫ କିଲୋମିଟର। ଉଡ଼ାଜାହାଜରେ ଦୁଇଘଣ୍ଟାର ବାଟ। ରାଜଧାନୀ ପୋର୍ଟ-ବ୍ଲେୟାର୍।

୫୬୨ଟି କ୍ଷୁଦ୍ରଦ୍ୱୀପର ସମାହାରରେ ଆଣ୍ଡାମାନ ନିକୋବର ଦୀପପୁଞ୍ଜ। ସମୁଦାୟ କ୍ଷେତ୍ରଫଳ ପ୍ରାୟ ୮ହଜାର ବର୍ଗ କିଲୋମିଟର। ସେଥିରୁ ୯୦ ଭାଗ ଜଙ୍ଗଲ। ଲୋକସଂଖ୍ୟା ଚାରିଲକ୍ଷ। ସେଥିମଧ୍ୟରେ ଓଡ଼ିଆଙ୍କ ସଂଖ୍ୟା ଆନୁମାନିକ ତିନିଶହ। ଶିକ୍ଷା, ନୌବାହିନୀ, ବିଭିନ୍ନ ସରକାରୀ ବେସରକାରୀ ଅନୁଷ୍ଠାନରେ ଓଡ଼ିଆମାନେ କାର୍ଯ୍ୟ କରନ୍ତି।

୧୮୫୮ରେ ପ୍ରଥମେ ଇଂରେଜମାନେ କଳାପାଣି ଦ୍ୱୀପ ଅଧିକାର କରି କଏଦୀ ଓ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସେଠାରେ ନିର୍ବାସନ କରିବା ପାଇଁ ସ୍ଥିର କଲେ। ପରେ ଅବଶ୍ୟ ପୋର୍ଟ ବ୍ଲେୟାର୍‌ରେ ସେମାନେ ନିର୍ମାଣ କଲେ ୭୯୬ଟି କୋଠରୀ ବିଶିଷ୍ଟ ସେଲ୍ୟୁଲାର୍ ଜେଲ୍। ବହୁ ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ବନ୍ଦୀ ଥିଲେ ସେଇ ଜେଲ୍‌ରେ। ପରିଣାମରେ କଳାପାଣି ପରିଚିତ ହୋଇପଡ଼ିଲା ସାରା ଦେଶରେ। ଶେଷରେ ୧୯୪୩ ଡିସେମ୍ବର ୩୧ ତାରିଖରେ ନେତାଜୀ ସୁଭାଷ ଚନ୍ଦ୍ର ବୋଷ କଳାପାଣିରେ ହିଁ ପ୍ରଥମେ ଉତ୍ତୋଳନ କଲେ ଭାରତର ଜାତୀୟ

ପତାକା– ଘୋଷଣା କଲେ ଭାରତର ସ୍ୱାଧୀନତା । କଳାପାଣି ଆଜି ଭାରତର ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ତୀର୍ଥଭୂମି ।

କଳାପାଣିରେ ଭାରତର ସବୁ ଭାଷା ଓ ଧର୍ମର ଲୋକେ ବାସ କରନ୍ତି । କୁହାଯାଏ- ଏହା ଏକ କ୍ଷୁଦ୍ର ଭାରତ ବର୍ଷ ।

କଳାପାଣିରେ ଆମେ ଲକ୍ଷ୍ୟ କଲୁ, ୧୮୭୯ରେ ନିର୍ବାସିତ ଓଡ଼ିଶାର ଗଜପତି ଏଠାରେ ଏକ ପରିଚିତ ନାମ । ପ୍ରଥମେ ତାଙ୍କ ସମ୍ପର୍କରେ କାଲାପାନି ତାରିଖ୍-ଏ-ଅଜୀବ୍ ନାମରେ ଉର୍ଦ୍ଦୁଗ୍ରନ୍ଥରେ ସ୍ୱାଧୀନତା ସଂଗ୍ରାମୀ ଜାଫର୍ ଥାନେଶ୍ୱରୀ ଉଲ୍ଲେଖ କରିଥିଲେ । ଥାନେଶ୍ୱରୀ ନିଜେ ଗଜପତିଙ୍କ ସହିତ କଳାପାଣି ଦ୍ୱୀପରେ ନିର୍ବାସିତ ହୋଇଥିଲେ । ଥାନେଶ୍ୱରୀ ଲେଖିଥିଲେ, ଗଜପତିଙ୍କୁ ଲୁହା ବେଡ଼ି ପିନ୍ଧାଇ ଇଂରେଜ ସରକାର ଇତର କଏଦୀମାନଙ୍କ ଭଳି ନିର୍ଯାତନା ଦେଇଥିଲେ । ପରିଣାମରେ ଗଜପତିଙ୍କର ଖୁବ୍ ଶୀଘ୍ର ମୃତ୍ୟୁ ହେଲା । ତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ପାଳିତ ହୋଇନଥିଲା । ସେଲ୍ୟୁଲାର ଜେଲ୍‌ରେ ମଧ୍ୟ ଗଜପତିଙ୍କ ନାମ ଉଲ୍ଲେଖ ରହିଛି ।

କଳାପାଣିର ଅନ୍ୟାନ୍ୟ ଭାଷାଭାଷୀଙ୍କ ତୁଳନାରେ ଅବଶ୍ୟ ଓଡ଼ିଆମାନଙ୍କ ସଂଖ୍ୟା କମ୍ । କିନ୍ତୁ ଓଡ଼ିଶା ସହିତ କଳାପାଣିର ସମ୍ପର୍କ ଇତିହାସରେ ଏକ ଦୁଃଖଦ ମୁହୂର୍ତ୍ତରୁ । ସମ୍ପ୍ରତି କଳାପାଣିର ଓଡ଼ିଆମାନେ ଉତ୍କଳ ସମାଜ ଗଠନ କରି ସାମାଜିକ ଓ ସାଂସ୍କୃତିକ କ୍ଷେତ୍ରରେ ଏକତ୍ରିତ ହୋଇଛନ୍ତି । ନିକଟ ଅତୀତରେ ସେମାନେ ପୋର୍ଟ ବ୍ଲେୟାର୍‌ରେ ପ୍ରତିଷ୍ଠା କରିଛନ୍ତି ଜଗନ୍ନାଥ ମନ୍ଦିରଟିଏ- ସିଦିପୁର ଅଞ୍ଚଳରେ । ଏଇ ମନ୍ଦିରରୁ ଓଡ଼ିଆ ଜଗନ୍ନାଥ ଜଣାଣ ଶୁଣି ଆମେ ଅଭିଭୂତ ହେଲୁ- ମନେ ହେଲା, କଳାପାଣି ଆଉ ଦୂର ନୁହେଁ; ଜଗନ୍ନାଥଙ୍କ ନୀଳଚକ୍ର ତ ଦୃଶ୍ୟମାନ ହେଉଛି ପୋର୍ଟ-ବ୍ଲେୟାର୍‌ରୁ । ❐

(୨୦୦୦)

'ନୂତନ ମାଟିର ସ୍ୱର୍ଣ୍ଣ' ଗଣେଶ୍ୱର ମିଶ୍ରଙ୍କ ଚତୁର୍ଥ ଭ୍ରମଣ ଗ୍ରନ୍ଥ। ଏହା ପୂର୍ବରୁ 'କ୍ୟାଣ୍ଟରବରୀ କାହାଣୀ', 'ସମୁଦ୍ର ସେପାରେ' ଓ 'ନିଜ ଦେଶ ଅନ୍ୟ ଦେଶ' ପ୍ରକାଶିତ।

ଉପନ୍ୟାସ, ଗଳ୍ପ, ଫିଚର୍, ଅନୁବାଦ, କବିତା ଓ ଶିଶୁ ସାହିତ୍ୟରେ ଗଣେଶ୍ୱର ମିଶ୍ରଙ୍କ ସଫଳତା ସ୍ୱୀକୃତ। ତାଙ୍କର ଉପନ୍ୟାସ 'ସକାଳର ମୁହଁ'ର ଇଂରାଜୀ ଅନୁବାଦ ମ୍ୟାକ୍‌ମିଲାନ୍ ସଂସ୍ଥା ଦ୍ୱାରା ପ୍ରକାଶିତ। ସୃଜନଶୀଳ ସାହିତ୍ୟ ପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ଉତ୍କଳ ସମ୍ମାନ, ଭାରତ ସରକାରଙ୍କ ସିନିୟର ଫେଲୋସିପ୍, ଚାର୍ଲସ୍-ୱାଲେସ୍ ରାଇଟର୍-ଇନ୍-ରେସିଡେନ୍‌ସ୍ ଫେଲୋସିପ୍ ପ୍ରଭୃତି ଲାଭ କରିଛନ୍ତି।


ISBN 81 88371 03 3